

# ଜୀବନ ଚରିତ

ଫକୀରମୋହନ ସେନାପତି



# ଜୀବନ ଚରିତ

୰ ଫକୀରମୋହନ ସେନାପତି

ଫକୀରମୋହନ ପ୍ରଣୀତ

# ଜୀବନ ଚରିତ

ସଂଗ୍ରାହକ ଓ ସଂପାଦକ :

ଡ. ସୁଦର୍ଶନ ଆଚାର୍ଯ୍ୟ

ପ୍ରକାଶକ :




ତାରାତାରିଣୀ ପୁସ୍ତକାଳୟ
ବାରାକସ, ବ୍ରହ୍ମପୁର-୧

[ ଜୀବନ ଚରିତ : ୰ **ଫକୀରମୋହନ ସେନାପତି**; ସଂଗ୍ରାହକ ଓ ସଂପାଦକ : **ଡ. ସୁଦର୍ଶନ ଆଚାର୍ଯ୍ୟ,** ପ୍ରଫେସର, ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର-୭୬୦୦୦୭; ପ୍ରକାଶକ : ତାରତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର-୭୬୦୦୦୧; ମୁଦ୍ରଣ : ସନ୍ତୋଷ ପ୍ରିଣ୍ଟର୍ସ, ବ୍ରହ୍ମପୁର-୭୬୦୦୦୯; ନୂତନ ସଂସ୍କରଣ : ୧୯୯୩; ମୂଲ୍ୟ : **ଅଠର ଟଙ୍କା** ]

[ Jeeban Charita by **Phakiromohan Senapati**; Edited by **Dr. Sudarsana Acharya,** Prof of Oriya, Berhampur University, Berhampur - 760007; Published by Taratarini Pustakalaya, Berhampur-760001; Printed at Santosh Printers, Berhampur-760009; New Edition, 1993; **Price : Rs 18-00** ]

## ପ୍ରକାଶକଙ୍କ ଲେଖନୀରୁ........

ଫକୀରମୋହନ ଏ ଜାତିର ନମସ୍ୟ । ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ସେ ଯାହାସବୁ କରିଯାଇଛନ୍ତି, ତାର ପଟାନ୍ତର ନାହିଁ । ଆଦ୍ୟ ଯୌବନରୁ ଶେଷ ନିଃଶ୍ୱାସ ପରିତ୍ୟାଗ ପର୍ଯ୍ୟନ୍ତ ସେ ସାହିତ୍ୟ ସାଧନାକୁ ଜୀବନର ବ୍ରତରୂପେ ଗ୍ରହଣ କରି ନେଇଥିଲେ । କିନ୍ତୁ ଗଭୀର କ୍ଷୋଭର ବିଷୟ ଏ ପର୍ଯ୍ୟନ୍ତ ତାଙ୍କ ପ୍ରକାଶିତ ରଚନାବଳୀ ସମ୍ପୂର୍ଣ୍ଣ ଭାବେ ସଙ୍କଳିତ ହୋଇପାରି ନାହିଁ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ଫକୀର ମୋହନଙ୍କ ୧୫୦ତମ ଜନ୍ମବାର୍ଷିକୀ ପାଳନ ଅବସରରେ ଓଡ଼ିଆ ବିଭାଗର ବରେଣ୍ୟ ପ୍ରଫେସର ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ସେନାପତି ଅନୂଦିତ ରାମାୟଣର ବାଳକାଣ୍ଡ ପ୍ରକାଶ କରିବା ସହିତ ତାଙ୍କ ନିକଟରେ ଆଉ କେତେକ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ଥିବା ପ୍ରକାଶ କରିଥିଲେ । ଏ ସମୟରୁ ଫକୀର ମୋହନଙ୍କ ଏପରି କେତେକ ଗ୍ରନ୍ଥ ଲୋକଲୋଚନକୁ ଆଣିବା ପାଇଁ ମୁଁ ମନସ୍ଥ କରିଥିଲି । ଡକ୍ଟର ଆଚାର୍ଯ୍ୟ ବର୍ତ୍ତମାନ ଏହି ଗ୍ରନ୍ଥଟି ସମ୍ପାଦନା କରି ପ୍ରକାଶ ପାଇଁ ସୁଯୋଗ ଦେଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ । ଭବିଷ୍ୟତରେ ଫକୀରମୋହନଙ୍କ ଆଉ କିଛି ଦୁଷ୍ପ୍ରାପ୍ୟ ଗ୍ରନ୍ଥ ପ୍ରକାଶ କରିବାର ଆଶା ରଖିଛୁ । ଓଡ଼ିଶାର ସୁଧୀ ପାଠକବୃନ୍ଦ ଏ ଦିଗରେ ଆମର ସହାୟକ ହେବେ ବୋଲି ଆଶା ।

**ଭଗବାନ ପାଢ଼ୀ**

## ଫକୀରମୋହନଙ୍କ ଅନ୍ୟାନ୍ୟ ରଚନା

୧ । ଭାରତବର୍ଷର ଇତିହାସ
୨ । ଅଙ୍କମାଳା
୩ । ରାମାୟଣ
୪ । ମହାଭାରତ
୫ । ଶ୍ରୀମଦ୍ ଭଗବଦ୍ ଗୀତା
୬ । ଉତ୍କଳ ଭ୍ରମଣଂ
୭ । ପୁଷ୍ପମାଳା
୮ । ଉପହାର
୯ । ଛ ମାଣ ଆଠଗୁଣ୍ଠ
୧୦ । ଖିଲ ହରିବଂଶ
୧୧ । ଉପନିଷଦ୍ ସଂଗ୍ରହ
୧୨ । ଅବସର ବାସରେ
୧୩ । ବୌଦ୍ଧାବତାର କାବ୍ୟ
୧୪ । ପୂଜାଫୁଲ
୧୫ । ପ୍ରାର୍ଥନା
୧୬ । ଧୂଳି
୧୭ । ମାମୁଁ
୧୮ । ଲଛମା
୧୯ । ପ୍ରାୟଶ୍ଚିତ୍ତ
୨୦ । ଛାନ୍ଦୋଗ୍ୟ ଉପନିଷଦ
୨୧ । ଗଳ୍ପସ୍ୱଳ୍ପ
୨୨ । ଆତ୍ମଜୀବନ ଚରିତ



# ମୁଖବନ୍ଧ

— ୧ —

ଅଙ୍ଗୀକାରବଦ୍ଧତା ଯେ କୌଣସି ସଫଳ ସାହିତ୍ୟ ସୃଷ୍ଟିର ମୂଳତନ୍ତ୍ର । ଲେଖକ ଏକ ନିର୍ଦ୍ଦିଷ୍ଟ ଦେଶ, ଜାତି, ଭାଷା, ସାହିତ୍ୟ, ବ୍ୟକ୍ତି, ସଂସ୍କୃତି କିମ୍ବା ଆଦର୍ଶ, ବାଦ ପ୍ରଭୃତି ଅଙ୍ଗୀକାରବଦ୍ଧ ହେଲେ ତାର ରଚନା ସମ୍ଭାର ସମୟବିକଶିତ ହୋଇ ଯେପରି ଦେଶକାଳ ଅତିକ୍ରମ କରେ, ସେହିପରି ତାର ସୃଷ୍ଟି-ଆତ୍ମମୁଖ୍ୟ ପାଠକମାନଙ୍କୁ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଅଗ୍ରସର ହେବାପାଇଁ ସାହାଯ୍ୟ କରିଥାଏ । ବିଶ୍ୱସାହିତ୍ୟର କାଳଜୟୀ ଲେଖକମାନଙ୍କ ସୃଷ୍ଟି ବିଶ୍ଳେଷଣ କଲେ ଏହାର ସତ୍ୟତା ଉପଲବ୍ଧି କରିହେବ । ଅନ୍ୟାନ୍ୟ ସାହିତ୍ୟ ପରି ଓଡ଼ିଆ ସାହିତ୍ୟରେ ମଧ୍ୟ ଏ ପ୍ରକାର ଲେଖକଙ୍କ ସଂଖ୍ୟା ମୁଷ୍ଟିମେୟ । ଅତୀତରେ ରାଷ୍ଟ୍ର, ସାହିତ୍ୟ, ଧର୍ମାନୁଚେତନା ପ୍ରଭୃତି ଦୃଢ଼ ପ୍ରତିବଦ୍ଧତା ହିଁ ସାରଳା, ଉପେନ୍ଦ୍ର, ଗୋପାଳକୃଷ୍ଣ ପ୍ରଭୃତିଙ୍କୁ ସାହିତ୍ୟିକ ପ୍ରତିଷ୍ଠା ପ୍ରଦାନ କରିବା ପାଇଁ ସମର୍ଥ ହୋଇଥିଲା । ଆଧୁନିକ ଯୁଗରେ ଫକୀରମୋହନ ସେନାପତି ଏହିପରି ଜଣେ କୃତି ସାହିତ୍ୟିକ । ତାଙ୍କ ଜୀବନର ପ୍ରତ୍ୟେକଟି କ୍ଷେତ୍ରରେ ଏହାର ପ୍ରତ୍ୟକ୍ଷ ରୂପ ଉପଲବ୍ଧି କରିହୁଏ । ପ୍ରେସ ସ୍ଥାପନା, ପତ୍ରିକା ପ୍ରକାଶନ, ପୁରାଣ ଉପନିଷଦ ପ୍ରଭୃତିର ଅନୁବାଦ, ବିଭିନ୍ନ ଦେଶୀୟ ରାଜ୍ୟରେ ଦେଓ୍ୱାନୀ, ସାହିତ୍ୟ ସର୍ଜନା ସବୁଠି ଏହି ପ୍ରଚଣ୍ଡ ବ୍ୟକ୍ତିତ୍ୱଟିର ଲକ୍ଷ୍ୟସିଦ୍ଧି ପାଇଁ ଏକମୁଖୀ ସାଧନାର ପରିଚୟ ଲାଭକରିବା ଦୁରୂହ ନୁହେଁ । ଏହି ଅନପେକ୍ଷ କାରଣରୁ ଅଙ୍ଗୀକାରବଦ୍ଧତା ହିଁ ଫକୀରମୋହନଙ୍କୁ ଓଡ଼ିଆ ଜାତି ଓ ସାହିତ୍ୟର ସେନାପତି ପଦରେ ଅଧିଷ୍ଠିତ କରିପାରିଛି ।

'ଜୀବନ ଚରିତ' ଏହି ଅଙ୍ଗୀକାରବଦ୍ଧତାର ଆଦ୍ୟ ନିଦର୍ଶନ । ଏହାର ପ୍ରକାଶନ ସମୟ ୧୮୬୭ । ସେତେବେଳକୁ ଫକୀରମୋହନଙ୍କ ବୟସ ମାତ୍ର ତେଇଶି ବର୍ଷ । ପାରିବାରିକ ଓ ପାରିପାର୍ଶ୍ୱିକ ପ୍ରତିକୂଳତା ଫଳରେ ଉଚ୍ଚ ଶିକ୍ଷାଲାଭରୁ ସେ ବଞ୍ଚିତ । ନିଜ ପ୍ରଚେଷ୍ଟାରେ ସଂସ୍କୃତ, ବଙ୍ଗଳା, ଇଂରାଜୀ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟରୁ କିଛି ପଢ଼ିବାର ସୁଯୋଗ ସେ ପାଇଥାନ୍ତି । କିନ୍ତୁ ମନୋବଳ ତାଙ୍କର ଅତ୍ୟନ୍ତ ଦୃଢ଼;

ଦେଶ ଓ ଜାତିପାଇଁ ତାଙ୍କର ମମତା-ଅନୁରୂପ ଭାବେ ତତୋଽଧିକ । ଆଦ୍ୟ ଯୌବନର ଏହି ମାନସିକତା ତାଙ୍କ ଆତ୍ମ ଜୀବନୀରେ ଏପରି ଭାବରେ ଉପସ୍ଥାପିତ :

"ଉତ୍କଳ ଭାଷା ବିଷୟ ଉଲ୍ଲେଖ ସମୟରେ ବଙ୍ଗାଳୀ ଶିକ୍ଷକ ଓ ଅନ୍ୟାନ୍ୟ ବଙ୍ଗାଳୀ ବାବୁମାନେ ଯେପରି ତୁଚ୍ଛ ତାଚ୍ଛଲ୍ୟ ଭାବରେ ମନ୍ତବ୍ୟ ପ୍ରକାଶ କରିଥାନ୍ତି, ପ୍ରକୃତରେ ଆପଣାର ମାତାକୁ ଅପମାନ କଲାପରି ନିନ୍ଦାକାରୀମାନଙ୍କ ପ୍ରତି ବିଷମ କ୍ରୋଧ ଏବଂ ପ୍ରାଣରେ ବଡ଼ ଆଘାତ ଲାଗେ । ସେ ସମୟରେ ମନ ମଧ୍ୟରେ ଏମନ୍ତ ଗୋଟାଏ ଧାରଣା ଜାତ ହୋଇଗଲା ଯେ, ପ୍ରକୃତରେ ଆମ୍ଭମାନଙ୍କ ମାତୃଭାଷାର ଉନ୍ନତି ନ ହେଲେ ଚିରକାଳ ଭିନ୍ନଦେଶୀୟ ଲୋକଙ୍କଠାରେ ଅବଜ୍ଞାତ ହୋଇ ରହିଥିବୁଁ ଏବଂ ଆମ୍ଭମାନଙ୍କର ଜାତୀୟ ଅବସ୍ଥା ମଧ୍ୟ ଉନ୍ନତି ଲାଭ କରିବାର ସମ୍ଭାବନା ବିରଳ ହେବ । ଭାଷା ଉନ୍ନତିର ଉପାୟ କ'ଣ ? ବର୍ତ୍ତମାନ ଦିବାନିଶି ଭାବନା ଏବଂ ଏକମାତ୍ର ଲକ୍ଷ୍ୟ, ଯେ କୌଣସି ପ୍ରକାରେ ହେଉ ମାତୃଭାଷାର ଉନ୍ନତି ସକାଶେ ପ୍ରାଣପାତ କରିବାକୁ ହେବ ।"

[ ଫକୀରମୋହନ ଗ୍ରନ୍ଥାବଳୀ—ପ୍ରଥମ ଖଣ୍ଡ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ-୨, ୨ୟ ସଂସ୍କରଣ, ୧୯୬୩; ପୃ ୪୧ ]

ଉଣିଶି କୋଡିଏ ବର୍ଷର ବିଦ୍ୟାଶୂନ୍ୟ, ଶକ୍ତିହୀନ ଓ ଦରିଦ୍ର ଯୁବକଟି ମନରେ ଯେଉଁ 'ଗୋଟିଏ ଧାରଣା' ଜାଗ୍ରତ ହୋଇଥିଲା ଏବଂ ମାତୃଭାଷାର ଉନ୍ନତି ସକାଶେ 'ପ୍ରାଣପାତ' କରିବାର ସଙ୍କଳ୍ପ ଦେଖା-ଦେଇଥିଲା ତାହା ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ଫକୀର ମୋହନଙ୍କୁ ଆବିଷ୍ଟ କରି ରଖିଥିଲା ।

ମାତୃଭାଷା ଓ ମାତୃଭୂମିର ଉନ୍ନତି ପାଇଁ ଯୁବକ ଫକୀରମୋହନଙ୍କ ବ୍ୟାକୁଳତା ନିମ୍ନଲିଖିତ ଏହି କେତୋଟି ପଂକ୍ତିରୁ ଅନୁମାନ କରାଯାଇ ପାରିବ :

"ସେ ସମୟରେ ବଙ୍ଗଭାଷାରେ ପ୍ରତି ମାସରେ ନାନା ବିଷୟରେ କ୍ଷୁଦ୍ର ବୃହତ୍ ଅନେକ ପୁସ୍ତକ ବାହାରୁଥାଏ । ମୁଁ କେତେକ ପୁସ୍ତକ ନିଜ ବ୍ୟୟରେ କିଣି, କେତେକ ବାଲେଶ୍ୱର ସହରସ୍ଥ ମୁନାହାଟ ଗ୍ରାମନିବାସୀ ବାବୁ ଦାମୋଦର ପ୍ରସାଦ ଦାସଙ୍କ ପୁସ୍ତକାଳୟରୁ ଆଣି ପଢ଼େ ।"

"ଖଣ୍ଡିଏ ବଙ୍ଗଳା ନୂତନ ପୁସ୍ତକ ହସ୍ତଗତ ହେଲେ ମୁଁ ଅନେକବେଳ ପର୍ଯ୍ୟନ୍ତ ତାହା ହସ୍ତରେ ଧରି ଓଲଟ ପାଲଟ କରେ, ଚତୁର୍ଦ୍ଦିଗ ଦେଖେ ଏବଂ ମନରେ କରେଁ କେବେ ଉତ୍କଳ ଭାଷାରେ ଏହିପରି ଖଣ୍ଡିଏ ପୁସ୍ତକ ବାହାରିବ । ଅଜ୍ଞାତସାରରେ ଗୋଟିଏ ଦୀର୍ଘ ନିଃଶ୍ୱାସ ପଡ଼ିଯାଏ ।"

"ସମୟ ସମୟରେ କୌଣସି କୌଣସି ବିଦ୍ୱାନ୍ ଲୋକ ଇଂରାଜୀରୁ ଖଣ୍ଡିଏ ଖଣ୍ଡିଏ ପୁସ୍ତକ ବଙ୍ଗଳାରେ ଅନୁବାଦ କରି ସହସ୍ର ସହସ୍ର ଟଙ୍କା ପୁରସ୍କାର ପାଉଥିବାର ଶୁଣୁଥାଏଁ । ଅନୁବାଦଗୁଡ଼ିକ ଅଣାଇ ପଢ଼େଁ, ଈର୍ଷାନଳରେ ପ୍ରାଣ ଯେପରି ଦଗ୍ଧ ହୋଇଯାଏ । ମନରେ କରେଁ, ସରକାର କି ସକାଶେ ଉତ୍କଳରେ ଅନୁବାଦ ସମିତି ପ୍ରତିଷ୍ଠା କରୁନାହାନ୍ତି ?"

"ମାତ୍ର ଲେଖାରୁ ବିରତ ହେଲିନାହିଁ । ମୋର ଆଶାଥାଏ, ମୋର ଲେଖା ଦେଖିଲେ ଆଉ କେହି ଲେଖିବାକୁ ଓ ଛପା ପୁସ୍ତକ ବାହାର କରିବାକୁ ଯତ୍ନ କରିବେ । ବଙ୍ଗାଳୀ ବାବୁମାନଙ୍କ ବିଦ୍ରୂପ ଏଣିକି ଅସହ୍ୟ ହୋଇ ପଡ଼ିଲାଣି, ସ୍ଥିରହୋଇ ରହିପାରୁ ନାହିଁ । ପୂଜ୍ୟପାଦ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ମହୋଦୟଙ୍କ ଆଦେଶରେ ତାହାଙ୍କ ରଚିତ ବଙ୍ଗଳା ଜୀବନ ଚରିତ ଖଣ୍ଡିକ ଉତ୍କଳ ଭାଷାରେ ଅନୁବାଦ କରି କଲିକତା ବାପ୍ଟିଷ୍ଟ ମିଶନ ପ୍ରେସରୁ ଛପାଇ ଆଣିଲି ।"

[ ଉଦ୍ଧୃତ : ପୃ ୪୧-୪୪ ]

'ଜୀବନ ଚରିତ' ରଚନାର ଏହାହିଁ ହେଉଛି ମାନସିକ ପୃଷ୍ଠଭୂମି ।

—୨—

ଫକୀରମୋହନ ଆଧୁନିକ ଓଡ଼ିଆ ଗଦ୍ୟ ଭାଷାର ଆଦ୍ୟ ପ୍ରବର୍ତ୍ତକ । ସେ ଯେଉଁ ଓଡ଼ିଆ ଭାଷାରେ ପାଠ୍ୟ ପୁସ୍ତକ ଅଧ୍ୟୟନ କରି ପରୀକ୍ଷାରେ କୃତିତ୍ୱ ହାସଲ କରିଥିଲେ ତାହା ତାଙ୍କୁ ଅବଶ୍ୟ କୃତିତ୍ୱର ଆନନ୍ଦ ଦେଇଥିଲା କିନ୍ତୁ ଓଡ଼ିଆ ଭାଷାର ବିକୃତ ରୂପ ତାଙ୍କ ମନରେ ସୃଷ୍ଟି କରିଥିଲା ଗଭୀର କ୍ଷୋଭ । ସେତେବେଳେ ଇଂରାଜୀ ଓ ବଙ୍ଗଳାରୁ ଅନୂଦିତ ହୋଇ କେତେକ ଓଡ଼ିଆ ପୁସ୍ତକ ପାଠ୍ୟ ନିର୍ଘଣ୍ଟରେ ସ୍ଥାନ ପାଇଥିଲେ । ଅନୁବାଦକମାନଙ୍କ ମଧ୍ୟରୁ କେତେକ ବଙ୍ଗଳା ଶିକ୍ଷିତ ଓଡ଼ିଆ ଥିଲେ ହେଁ ଅଧିକାଂଶ ଥିଲେ ବଙ୍ଗାଳୀ ଓ ବଙ୍ଗଳା ମାଧ୍ୟମରେ ଓଡ଼ିଆ ଶିକ୍ଷା କରିଥିବା ଇଂରାଜୀ ବିଦ୍ୱାନ୍ । ଏଣୁ ଏମାନଙ୍କର ଓଡ଼ିଆ ଭାଷାଥିଲା ବିକୃତ ଓ ହାସ୍ୟୋଦ୍ଦୀପକ । ସାହିତ୍ୟେତର ପାଠ୍ୟ ପୁସ୍ତକଗୁଡ଼ିକର ଭାଷାରୁ ଦୁଇଗୋଟି ଉଦାହରଣ ଦେଲେ ଏ ଭାଷାର ଯଥାର୍ଥ ସ୍ୱରୂପ ଅବଧାରଣା କରାଯାଇପାରିବ ।

"ଅନୁମାନ ହୁଅଇ ଯେ ଜଳ ପ୍ଲାବଣରେ ଅଳ୍ପଦିନ ହେଲା ଉତ୍ତାରେ ଏହି ଦେଶରେ ଲୋକମାନେ ବାସ କଲେ ପୁଣି ସେ ଲୋକ ହିନ୍ଦୁ ନଥିଲା ପଣ୍ଡିତମାନେ ନିଶ୍ଚୟ କରନ୍ତି ଯେ ଏହି ଦେଶର ଅସଲ ଲୋକ ଖିଲ ଗୋଆଣ୍ଡ କୋଳି ଚୂଆର ଇତ୍ୟାଦି ଜାତିମାନେ ଥିଲେ ପୁଣି ଥରକୁ ଥର ସିନ୍ଧୁନଦୀ ସେ ପାରସ୍ଥ ଲୋକ ଆସି ଏହି ଅସଲ ନିବାସିମାନଙ୍କୁ ପର୍ବତରେ ତଡ଼ିଦେଇ ଆପଣମାନେ ସେମାନଙ୍କର ସ୍ଥାନରେ ବାସ କଲେ ଏମାନେ ଏତେବେଳେ ହିନ୍ଦୁ ଖ୍ୟାତ ଅଛନ୍ତି ପୁଣି ନାନା ସ୍ଥାନରୁ ଓ ନାନା ସମୟରୁ ଆସିବାରୁ ଅନୁମାନ କରି ଯେ ଜାତିର ଭେଦ ସ୍ଥାପନ ହେଲା ।"

(ପଦାର୍ଥ ବିଦ୍ୟାସାର, ଅର୍ଥାତ୍ ଭୂଗୋଳ ଜ୍ୟୋତିଷ ସ୍ଥାବର ଜଙ୍ଗମ କାଷ୍ଠ ଇତ୍ୟାଦିର ବିବରଣ କଥାବାର୍ତ୍ତା : Compiled by Rev. A. Sutton : Cuttack : Printed and published at the Orissa Mission Press, 1843, Page-24)

"ଅନନ୍ତରେ ନବାବକୁ ଭୟ ନ ଦେଖାଇଲେ ସେ କେବେହେଁ ସନ୍ଧି କରିବେ ନାହିଁ କ୍ଲାଇବ ସାହେବ ଏହା ଉତ୍ତମରୂପେ ଜାଣିଲେ ଏବଂ କଲିକତା ପୁନର୍ବାର ଅଧିକାର ହେବାର ଦୁଇଦିନ ଉତ୍ତାରେ ବୋଇତ ସୈନ୍ୟ ପଠାଇ ସେ ସମସ୍ତର ପ୍ରଧାନ ବାଣିଜ୍ୟର ଅଧିକ ଧନର ସ୍ଥାନରେ ହୁଗୁଳି ନଗର ତାହାକୁ ଜୟ କଲେ । ଏହା ମୂଳରେ ଇଂରାଜ-ମାନଙ୍କର, ନବାବର ମଧ୍ୟସ୍ଥ ହେବା ନିମନ୍ତେ ପୁଣି ସନ୍ଧି ନିଷ୍ପତ୍ତି କରିବା ନିମନ୍ତେ ମୁର୍ଶିଦାବାଦରେ ସେଠ ଲୋକମାନଙ୍କର କତକ ଦେ ସମାଚାର ପଠାଇ ଥିଲା । ସେରାଜଉଦ୍ଦୌଲା ପ୍ରଥମରେ ଆନନ୍ଦ ହୋଇ ସେମାନଙ୍କ ପରାମର୍ଶ ଗ୍ରହଣ କରିଥିଲା ଏହାଇ କଥିତ ଅଛି ମାତ୍ର କ୍ଲାଇବ ସାହେବ ହୁଗୁଳିସ୍ଥ ବାଣିଜ୍ୟ ସ୍ଥାନ ଅଧିକାର କରି ଲୁଟି କରିଅଛନ୍ତି ଏହି ସମାଚାର ଶୁଣି କ୍ରୋଧରେ ପ୍ରଜ୍ୱଳିତ ହୋଇ ସେହିକ୍ଷଣି କଲିକତା ଯିବାକୁ ସୈନ୍ୟମାନଙ୍କୁ ଆଜ୍ଞା କଲା । ଆଉ ୩୦ ଜାନୁଏରି ସେ ସୈନ୍ୟ ସମେତ ଗମନ କରି ନଦୀ ପାର ହୋଇ ୨ ଫେବ୍ରୁଏରି ହୁଗୁଳିରେ କ୍ଲାଇବ ସାହେବଙ୍କର ଛାଉଣିର ପାଖରୁ ବାଟ ମଧ୍ୟରେ ଆସି ନଗରର ପଛ ଭାଗରେ ଛାଉଣି ସ୍ଥାପନ କଲା । ଯେତେବେଳେ କ୍ଲାଇବ ସାହେବଙ୍କର ସୈନ୍ୟ ସାତଶହ ଇଉରୋପୀୟ, ବାରଶହ ଏ ଦେଶର ସୈନ୍ୟ ଥିଲେ ମାତ୍ର ନବାବର ସୈନ୍ୟ ପ୍ରାୟ ଚାଳିଶ ହଜାର ଥିଲେ । ସେରାଜଉଦ୍ଦୌଲାର ଆସିବା ମାତ୍ରକେ କ୍ଲାଇବ ସାହେବ ସନ୍ଧି କରିବା ନିମନ୍ତେ ତାହାଙ୍କ ପାଖକୁ ଦୂତ ପଠାଇ ମିଳନ କରିବାର ଇଚ୍ଛା ଜଣାଇଲା, ଦୂତ ନବାବର କଟକରେ ପ୍ରବେଶ ହେଲା ଉତ୍ତାରେ ତାହାଙ୍କର ମୁଖରେ ଯେଉଁ ସନ୍ଧି କରିବାର କଥା ଥିଲା ତାହା ତାହାଙ୍କର ଅନ୍ତରସ୍ଥ ନୋହେ; ଏହା ସ୍ପଷ୍ଟ, ଜଣାଗଲା । ତାହାଙ୍କ ଆସିବାରେ କଲିକତାର ଗୃହଆଡ଼ସ୍ଥ ଲୋକମାନେ ଶଙ୍କାକୁଳ ହୋଇ ପଳାଇବାକୁ ଲାଗିଲେ ତହିଁରେ ଇଂରାଜମାନଙ୍କର ଖାଦ୍ୟ ଦ୍ରବ୍ୟର ଅପ୍ରାପ୍ତି ହେବାକୁ ଲାଗିଲା ଏବଂ କ୍ଲାଇବ ସାହେବ

ନବାବର ପ୍ରତି ଏଧାନ୍ତେ ଚଢ଼ାଉ କରିବାର ଉଚିତ ମଣି ଫେବୃଏରି ମାସର ଗୁରୁଦିନର ରାତ୍ରିରେ ନାବର ସେନାପତିଙ୍କର ବୋଇତକୁ ଯାଇ ତାହାଙ୍କଠାରୁ ଛଅ ଶହ ନାଉରିମା ଲୋକ ନେଇ ରାତ୍ରି ଦୁଇ ପ୍ରହରରେ ଏକ ଘଣ୍ଟା ସମୟରେ ସେମାନଙ୍କର ସହିତ କୂଳରେ ଓହ୍ଲାଇଲେ।"

[ ଇତିହାସ ସାର ସଂଗ୍ରହ ଅଥ ଓଡ଼ିଶା ଆଦି ବିବରଣ ସଂକ୍ଷେପ; ଦ୍ୱିତୀୟ ଭାଗ। By The Rev. A. Sutton; Second Edition. Cuttack. Printed at the Mission Press, W. Brooks, Printer. 1858. P. 71-72 ]

"ଏ ସମୟରେ ନେପୋଲିୟନ୍ ବୋନାପାର୍ଟ ନାମକ ଅତି ଖ୍ୟାତିମନ୍ତ ପୁରୁଷଟିଏ ବାହାରିଲା। ୧୭୯୯ ବର୍ଷଠାରେ ପ୍ରଜାପାଳନାଧିକାରରେ ଉକ୍ତ ନେପୋଲିୟନ ବୋନାପାର୍ଟ ନାମକ ପୁରୁଷ ମୁଖ୍ୟ ହୋଇ ବୃତ ହେଲା; ପାଳନାଧିକାର ଏହାର ସ୍ୱାୟତ୍ତ ହେଲା। ୧୮୦୪ ବର୍ଷଠାରେ ଏ ଫ୍ରାନ୍ସ ଦେଶରେ ସ୍ୱୟଂ ରଜା ହେଲା, ତେବେ ମହାରାଜ ପଦବୀ ଏହାକୁ ଦେବା ପାଇଁ ସେ ରୋମକପୁରୀର ପୋପ ନାମକ ପ୍ରଧାନ ଧର୍ମାଧ୍ୟାପକ ପେରିସ ପାଟଣାକୁ ଆସିଲା। ରାଜସାଡ଼ୀ ବାନ୍ଧିବା ବିଧି ଏହାର ହେଲେହେଁ ନେପୋଲିୟନ ବୋନପାର୍ଟ ମୁଁ ଆଗେ ଏହାକୁ ଅର୍ଜିଲି ବୋଲି ରାଜ କିରୀଟକୁ ଆପଣା ହସ୍ତରେ କାଢ଼ି ଆପଣା ମଥା ଉପରେ ରଖି ଦେଲା। ଏ ଦଶ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କଲା ପ୍ରାୟ ଇଉରୋପଯାକ ସ୍ୱାୟତ୍ତ କଲା, ମନ ପାଇଲା ଲୋକଙ୍କୁ ରଜା କରାଏ ମନ ନ ପାଇଲା ଲୋକଙ୍କୁ ରାଜତ୍ୱ ପଦବୀରୁ କାଢ଼ି ଦିଏ। ଏପରି ଇଉରୋପ ଖଣ୍ଡୀୟ ପ୍ରାୟ ସକଳ ଦେଶମାନଙ୍କ ବିଷୟରେ ଏ ଚଳାଇଲା, ଏକା ଇଙ୍ଗ୍ଲାଣ୍ଡ ଦେଶକୁ ଏ ପାରିଲା ନାହିଁ।

[ହିତୋପଦେଶ ଖଣ୍ଡୀୟ : ନାନା ଦେଶମାନଙ୍କର ଚରିତ୍ର ସଂଗ୍ରହ । ଉତ୍କଳ ଭାଷାରେ ଅନୁବାଦିତ; Cuttack: Printed at the Orissa Mission Press. 1863 Page-131]

କେବଳ ସାହିତ୍ୟେତର ପାଠ୍ୟ ପୁସ୍ତକ ନୁହେଁ, ଉଚ୍ଚ ଶ୍ରେଣୀରେ ପଢ଼ାଯିବା ପାଇଁ ଯେଉଁ ସାହିତ୍ୟ ପାଠ୍ୟ ପୁସ୍ତକ ସେତେବେଳେ ନିର୍ବାଚିତ ହୋଇଥିଲା ତାର ଭାଷା ମଧ୍ୟ ଅନୁରୂପ ଭାବେ ଥିଲା ବିକୃତ । ଅବଶ୍ୟ ସାହିତ୍ୟେତର ପାଠ୍ୟ ପୁସ୍ତକଗୁଡ଼ିକ ସିଧାସଳଖ ଇଂରାଜୀରୁ ଅନୂଦିତ ହୋଇଥିବା ଯୋଗୁଁ ଏବଂ ଅନୁବାଦକମାନେ ସାଧାରଣ ଲୋକଙ୍କ କଥିତ ଓଡ଼ିଆ ଶବ୍ଦ ଓ ବାକ୍ୟଗଠନ ସହିତ କେବଳ ପରିଚିତ ଥିବା ଯୋଗୁଁ ସେଗୁଡ଼ିକର ଭାଷା ମାର୍ଜିତ ଓଡ଼ିଆ ଭାଷାଠାରୁ ସଂପୂର୍ଣ୍ଣଭାବେ ଥିଲା ଭିନ୍ନ । କିନ୍ତୁ ସାହିତ୍ୟ ପାଠ୍ୟପୁସ୍ତକଗୁଡ଼ିକ ସଂସ୍କୃତରୁ ଅନୂଦିତ ହୋଇଥିଲା । ଏଥିପାଇଁ ସେ ସବୁର ଭାଷା ଅପେକ୍ଷାକୃତ ଥିଲା ମାର୍ଜିତ । ସେ ସମୟରେ 'ହିତୋପଦେଶ' ଉଚ୍ଚ ଶ୍ରେଣୀମାନଙ୍କରେ ପାଠ୍ୟପୁସ୍ତକରୂପେ ପ୍ରଚଳିତ ଥିଲା । ଏଥିରେ ବ୍ୟବହୃତ ଓଡ଼ିଆ ଭାଷା ହିଁ ଫକୀରମୋହନଙ୍କୁ କିଛି ଲେଖିବା ପାଇଁ ପ୍ରେରଣା ଦେଇଥିଲା । ଏହାର ଭାଷା ସଂପର୍କରେ ନିମ୍ନ ଉଦ୍ଧୃତିରୁ ଏକ ସ୍ଥୂଳଧାରଣା କରାଯାଇପାରିବ --

"ଏହି ହିତୋପଦେଶ ଶ୍ରୁତ ହେଲେ ବାକ୍ୟରେ ପଟୁତା ଆଉ ସଂସ୍କୃତ ବଚନତା ପୁଣି ନୀତିବିଦ୍ୟା ପ୍ରଦାନ କରେ ।

ପ୍ରାଜ୍ଞ ଲୋକ ଅଜର ଆଉ ଅମର ପ୍ରାୟ ବିଦ୍ୟା ଓ ଅର୍ଥଚିନ୍ତା କରିବ, ମାତ୍ର ମୃତ୍ୟୁ କର୍ତ୍ତୃକ କେଶରେ ଧୃତ ହେଲା ପ୍ରାୟ ଧର୍ମାଚରଣ କରିବ । ସର୍ବ ଦ୍ରବ୍ୟ ମଧ୍ୟରେ ବିଦ୍ୟା ଅତ୍ୟୁତ୍ତମ ଦ୍ରବ୍ୟ ଅଟେ, ହେତୁ କି ବିଦ୍ୟାରୂପ ଧନକୁ ଚୌରମାନେ ଅପହରଣ କରିପାରନ୍ତି ନାହିଁ; ବରଂ ବିଦ୍ୟା ଅମୂଲ୍ୟ ଏବଂ କେତେବେଳେ କ୍ଷୟ ହୋଇ ନପାରେ । ପୁନଶ୍ଚ ନୀଚଗା ନଦୀ ଯେମନ୍ତ ମନୁଷ୍ୟଙ୍କୁ ସମୁଦ୍ରରେ ପ୍ରବେଶ କରାଏ, ସେହିରୂପେ ବିଦ୍ୟା ଯେବେ ନୀଚ ଲୋକର ହୁଏ ତେବେ ତାକୁ

ଦୂଷ୍ଟ୍ୟ ରାଜାଙ୍କଠାରେ ପ୍ରବେଶ କରାଏ । ପୁନଶ୍ଚ ରାଜାଙ୍କ ସଙ୍ଗେ ମେଳ କରାଇବାର ଭାଗ୍ୟକୁ ପ୍ରାପ୍ତ କରାଏ । ବିଦ୍ୟାରୁ ବିନୟ ଜନ୍ମେ, ବିନୟରୁ ଯୋଗ୍ୟତା, ଯୋଗ୍ୟତାରୁ ଧନ ପ୍ରାପ୍ତ ହୁଏ, ଧନରୁ ଧର୍ମ ଏବଂ ଧର୍ମରୁ ସୁଖ ମିଳେ ।"

(ହିତୋପଦେଶ : Calcutta : Printed at the Calcutta School-Book Society's Press; and sold at their Depository, Circular Road, 1862, Page : 1)

ହିତୋପଦେଶ ଗ୍ରନ୍ଥଟିର ଅନୁବାଦକଙ୍କ ନାମ ଉଲ୍ଲେଖ ନଥିଲେ ମଧ୍ୟ ଏହା W. C. Lecyଙ୍କ ଦ୍ୱାରା ଅନୂଦିତ ହୋଇ ପ୍ରଥମେ ୧୮୫୫ ସାଲରେ ପ୍ରକାଶିତ ହୋଇଥିବା ଜଣାଯାଏ । (ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ—ଶ୍ରୀଧର ମହାପାତ୍ର ଶର୍ମା, ଗ୍ରନ୍ଥମନ୍ଦିର, ୧୯୮୬) ଏହାର ଭାଷା ଓ ସେଥିପାଇଁ ପାଠ୍ୟ ପୁସ୍ତକ ନିମିତ୍ତ ଏହାର ଅନୁପଯୋଗିତା ସମ୍ପର୍କରେ ଫକୀରମୋହନ 'ଜୀବନ ଚରିତ'ର ବିଜ୍ଞାପନରେ ଯାହା ଉଲ୍ଲେଖ କରିଛନ୍ତି, ତାହା ପ୍ରଣିଧାନଯୋଗ୍ୟ । ଏହାର ରଚନା ପ୍ରଣାଳୀର ଜଟିଳତା ଓ ଅସଲଗ୍ନତା ଫକୀରମୋହନଙ୍କୁ ନୂତନ ପାଠ୍ୟ ପୁସ୍ତକ ରଚନା ପାଇଁ ପ୍ରଣୋଦିତ କରିଥିଲା । ଫଳରେ ସେ ପ୍ରଥମେ 'ଭାରତବର୍ଷ ଇତିହାସ' ରଚନା କରିଥିଲେ । କିନ୍ତୁ ତାହା ପ୍ରକାଶ ପାଇବା ସମ୍ଭବ ହୋଇପାରି ନଥିଲା । ଏ ଦିଗରେ 'ଜୀବନ ଚରିତ' ତାଙ୍କର ଦ୍ୱିତୀୟ ଉଦ୍ୟମ ।

—ଗ—

'ଜୀବନ ଚରିତ' ଗ୍ରନ୍ଥଟି ମହାତ୍ମା ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ (୧୮୨୦-୧୮୯୧) ଲିଖିତ ବଙ୍ଗଳା 'ଜୀବନ ଚରିତ'ର(୧୮୪୯) ଅନୁବାଦ । ଈଶ୍ୱରଚନ୍ଦ୍ର ଭାରତୀୟ ସାଂସ୍କୃତିକ ଇତିହାସରେ ଏକ ସ୍ମରଣୀୟ ବ୍ୟକ୍ତିତ୍ୱ । ତାଙ୍କର ବୈପ୍ଳବିକ ଚିନ୍ତାଧାରା ଭାରତ ବର୍ଷରେ ସୃଷ୍ଟି କରିଥିଲା ଏକ ନୂତନ ଓ ମାର୍ଜିତ ପରମ୍ପରା । ସେ ଏକାଧାରରେ ଥିଲେ ଜଣେ ଅନନ୍ୟସାଧାରଣ ପଣ୍ଡିତ, ନିର୍ଭୀକ ସମାଜ ସଂସ୍କାରକ, ଦୂରଦୃଷ୍ଟି ସମ୍ପନ୍ନ ଶିକ୍ଷାବିତ୍ ଏବଂ ଜଣେ ସମ୍ବେଦନଶୀଳ ମାନବବାଦୀ ଯୁଗପୁରୁଷ । ବଙ୍ଗଳାରେ ଆଧୁନିକ ଶିକ୍ଷାର ପ୍ରବର୍ତ୍ତନ ଓ ପ୍ରସାର ଦିଗରେ ତାଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରାଚୀନ ଶିକ୍ଷା ପ୍ରଣାଳୀଠାରୁ ସ୍ୱତନ୍ତ୍ର

ଏକ ଯୁଗେ ଉପଯୋଗୀ ଶିକ୍ଷାପ୍ରଣାଳୀ ଉଦ୍ଭାବନ କରିବାରେ ସେ ସଫଳ ଉଦ୍ୟମ କରିଥିଲେ । ଭାରତୀୟ ସଂସ୍କୃତି ଓ ମନୀଷା ଏବଂ ପାଶ୍ଚାତ୍ୟ ବିଶ୍ୱର ଜ୍ଞାନରାଜ୍ୟ ସହିତ ପରିଚିତ କରାଇ କୋମଳମତି ଶିଶୁ ଓ କିଶୋରମାନଙ୍କୁ ଯୁଗୋପଯୋଗୀ ମଣିଷ କରି ଗଢ଼ିବା ଥିଲା ତାଙ୍କ ଶିକ୍ଷାନୀତିର ମୌଳିକ ଲକ୍ଷ୍ୟ । ଶିକ୍ଷାକ୍ଷେତ୍ରରେ ବିପ୍ଳବୀ ସ୍ୱରୂପ ସେ ହେଉଛନ୍ତି ଆଦି ପ୍ରବର୍ତ୍ତକ । କେବଳ ଦିଗ୍‌ଦର୍ଶନ ପ୍ରଦାନ, ଅଧ୍ୟାପନା ଓ ସ୍କୁଲ ସ୍ଥାପନା କରି ସେ ସନ୍ତୁଷ୍ଟ ହୋଇପାରି ନଥିଲେ; ଛାତ୍ରମାନଙ୍କ ପାଇଁ ଉପଯୁକ୍ତ ପାଠ୍ୟପୁସ୍ତକ ରଚନା କରିବାରେ ମଧ୍ୟ ତାଙ୍କର କୃତିତ୍ୱ ଅବିସମ୍ବାଦିତ । ଏ ପର୍ଯ୍ୟନ୍ତ ତାଙ୍କ ରଚିତ ପାଠ୍ୟପୁସ୍ତକଗୁଡ଼ିକର ଉପାଦେୟତା ଅକ୍ଷୁଣ୍ଣ ରହିଛି କହିଲେ ଅତ୍ୟୁକ୍ତି ହେବନାହିଁ । 'ବର୍ଣ୍ଣ ପରିଚୟ', 'ବୋଧୋଦୟ', 'କଥାମାଳା', 'ଚରିତାବଳୀ', 'ଜୀବନ ଚରିତ' 'ଉପକ୍ରମଣିକା' ପ୍ରଭୃତି ତାଙ୍କ ରଚିତ କେତୋଟି ବହୁପ୍ରଚଳିତ ପାଠ୍ୟପୁସ୍ତକ ।

ଈଶ୍ୱରଚନ୍ଦ୍ରଙ୍କ 'ଜୀବନ ଚରିତ' ବଙ୍ଗାବ୍ଦ ୧୭୭୧ ଅର୍ଥାତ୍ ୧୮୪୯ ସାଲରେ ଲିଖିତ ହୋଇ ପ୍ରକାଶିତ ହୁଏ । ଏହା ରବର୍ଟ ଓ ଓ୍ୱିଲିୟମ୍ ଚେମ୍ବର୍ସଙ୍କ ଲିଖିତ ଇଂରାଜୀ ଗ୍ରନ୍ଥର (Biography) ଆଂଶିକ ଅନୁବାଦ । ସମୟ ଅଭାବରୁ ସେ ସମଗ୍ର ଗ୍ରନ୍ଥଟି ଅନୁବାଦ କରିନପାରି ଦୁଃଖପ୍ରକାଶ କରିଛନ୍ତି । ଏଥିରେ 'କୋପରନିକସ, ଗାଲିଲିଓ, ସାର୍ ଆଇଜାକ୍ ନିଉଟନ୍, ହର୍ଶେଲ, ଗ୍ରେଶ୍ୟସ, ଲିନମ୍ୟସ୍, ଡୁବାଲ୍, ଜେଙ୍କିନସ୍, ଓ୍ୱିଲିୟମ୍ ଜୋନସ୍‌ଙ୍କ ଜୀବନ ଚରିତ ମାତ୍ର ପ୍ରଦାନ କରାଯାଇଛି । ଗ୍ରନ୍ଥଟିର ଉପାଦେୟତା ଓ ପାଠ୍ୟ-ଉପଯୋଗିତା ସମ୍ପର୍କରେ ଲେଖକ 'ବିଜ୍ଞାପନ'ରେ ଉଲ୍ଲେଖ କରିଥିଲେ :

"ଜୀବନ ଚରିତ ପାଠେ ଦ୍ୱିବିଧ ମହୋପକାର ଲାଭ ହୟ । ପ୍ରଥମତଃ, କୋନ କୋନ ମହାତ୍ମାରା ଅଭିପ୍ରେତ ସମ୍ପାଦନେ କୃତକାର୍ଯ୍ୟ ହଇବାର ନିମିତ୍ତ ଯେରୂପ ଅକ୍ଲିଷ୍ଟ ପରିଶ୍ରମ, ଅବିଚଳିତ ଉତ୍ସାହ, ମହୀୟସୀ ସହିଷ୍ଣୁତା ଓ ଦୃଢ଼ତର ଅଧ୍ୟବସାୟ ପ୍ରଦର୍ଶନ କରିୟାଛେନ ଏବଂ କେହ ବହୁତର ଦୁର୍ବହ ବିଗ୍ରହ ଓ ଦାରିଦ୍ର୍ୟନିବନ୍ଧନ ଅଶେଷ କ୍ଲେଶ

ଭୋଗ କରିୟାଓ ଯେ ବଂଶପାୟ ହଇତେ ବିଚଳିତ ହୟେନ ନାଇ, ତତ୍ ସମୁଦାୟ ଆଲୋଚନା କରିଲେ ଏକ କାଳେ ସହସ୍ର ଉପଦେଶରେ ଫଲପ୍ରାପ୍ତ ହଓୟା ଯାୟ । ଦ୍ୱିତୀୟତଃ, ଆନୁଷଙ୍ଗିକ ତତ୍ତଦ୍ଦେଶର ତତ୍କାଲୀନ ରୀତି, ନୀତି, ଇତିହାସ ଓ ଆଚାର ପରିଜ୍ଞାନ ହୟ । ଯେ ବିଷୟେର ଅନୁଶୀଲନେ ଏତାଦୃଶ ମହାର୍ଥ ଲାଭ ସମ୍ପନ୍ନ ହଇତେ ପାରେ ତାହାକେ ଅବଶ୍ୟଇ ଶିକ୍ଷା କାର୍ଯ୍ୟେର ଏକ ପ୍ରଧାନ ଅଙ୍ଗ ବଲିୟା ଅଙ୍ଗୀକାର କରିତେ ହଇବେକ୍ ।"

[ଜୀବନ ଚରିତ : ଈଶ୍ୱରଚନ୍ଦ୍ର ଶର୍ମା; ବିଦ୍ୟାସାଗର ରଚନା ସଂଗ୍ରହ, ପ୍ରଥମ ଖଣ୍ଡ; ବିଦ୍ୟାସାଗର ସ୍ମାରକ ଜାତୀୟ ସମିତି; ପ୍ରକାଶକ : ଶ୍ରୀ ନୀଳରତନ ବସୁ; ସାକ୍ଷରତା ପ୍ରକାଶନ, କଲିକତା-୧୨; ପ୍ରଥମ ପ୍ରକାଶ, ୧୯୭୨, ପୃଷ୍ଠା : ୧୭୩-୧୭୪ ]

ପାଠ୍ୟ ପୁସ୍ତକ ରଚୟିତା ଭାବେ ସମସାମୟିକ ବଙ୍ଗଳାରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ସୁଖ୍ୟାତି, ଗ୍ରନ୍ଥଟିର ଶିକ୍ଷୋପଯୋଗିତା, ସରଳ ଓ କୋମଳ ଭାଷା ଏବଂ ସର୍ବୋପରି ଓଡ଼ିଆ ଭାଷାରେ ଏପ୍ରକାର ଉପାଦେୟ ପାଠ୍ୟପୁସ୍ତକର ଅଭାବ ଫକୀରମୋହନଙ୍କୁ ଏହି ଗ୍ରନ୍ଥଟିର ଅନୁବାଦ ପାଇଁ ଅନୁପ୍ରେରିତ କରିଥିଲା । ଫଳରେ ସେ ଈଶ୍ୱରଚନ୍ଦ୍ରଙ୍କ ଅନୁମତି ନେଇ ଏହାକୁ ଅନୁବାଦ କରି ବାପ୍ଟିଷ୍ଟ ମିଶନ ପ୍ରେସ, କଲିକତାରେ ମୁଦ୍ରିତ କରାଇଥିଲେ ।

— ୪ —

ଇଂରାଜୀ ଶିକ୍ଷାର ପ୍ରଚଳନ ଫଳରେ ଓଡ଼ିଶାରେ ଯେଉଁ ଆଧୁନିକ ବିଦ୍ୟାଳୟମାନ ସ୍ଥାପିତ ହୋଇଥିଲା ସେସବୁର ଆବଶ୍ୟକତାକୁ ଦୃଷ୍ଟିରେ ରଖି ସେ ସମୟର ଆଧୁନିକ ଶିକ୍ଷିତ ଓଡ଼ିଆ, ବଙ୍ଗାଳୀ ଓ ଇଂରେଜୀ ଯୁବକମାନେ ବଙ୍ଗଳା ପାଠ୍ୟ ପୁସ୍ତକଗୁଡ଼ିକୁ ଓଡ଼ିଆରେ ଅନୁବାଦ କରିବା ପାଇଁ ପ୍ରୟାସ କରିଥିବା ବିଷୟ ପୂର୍ବରୁ ଉଲ୍ଲେଖ କରାଯାଇଛି । କିନ୍ତୁ

କେବଳ ସମସାମୟିକ ଲୋକକଥିତ ଓଡ଼ିଆ ଭାଷା ସମ୍ପର୍କରେ ଅବହିତ ଥିବାଯୋଗୁଁ ଓଡ଼ିଆ ଭାଷାର ପ୍ରାଣପ୍ରାଚୁର୍ଯ୍ୟ ତଥା ମୌଳିକତା ସମ୍ପର୍କରେ ଏମାନଙ୍କର ବିଶେଷ ଧାରଣା ନଥିଲା । ଏମାନେ ପ୍ରାଚୀନ ଓଡ଼ିଆ ସାହିତ୍ୟ ମଧ୍ୟ କ୍ୱଚିତ ଅଧ୍ୟୟନ କରିଥିଲେ । ବଙ୍ଗଳା ଓ ଓଡ଼ିଆ ଭାଷାର ଶବ୍ଦ, ବାକ୍ୟଗଠନ, କ୍ରିୟାପ୍ରୟୋଗ ପ୍ରଭୃତିରେ ଥିବା ସାମ୍ୟ ଏମାନଙ୍କୁ ଉଭୟ ଭାଷାର ମୌଳିକ ପାର୍ଥକ୍ୟ ସମ୍ପର୍କରେ ବିଭ୍ରାନ୍ତ କରୁଥିଲା । ଫଳରେ ଏହି ଅନୂଦିତ ଗ୍ରନ୍ଥଗୁଡ଼ିକର ଭାଷା ମାର୍ଜିତ ଓଡ଼ିଆ ଭାଷା ଅପେକ୍ଷା ବଙ୍ଗଳା ଭାଷାର ଅଧିକ ନିକଟବର୍ତ୍ତୀ ହୋଇପଡ଼ୁଥିଲା । ଓଡ଼ିଆ ଗଦ୍ୟ ଭାଷାର ଭିତ୍ତି ପ୍ରତିଷ୍ଠାତା ଫକୀରମୋହନ ପ୍ରଥମେ ଏ ସମ୍ପର୍କରେ ସଚେତନତା ପ୍ରକାଶ କରିଥିଲେ । 'ଜୀବନ ଚରିତ' ଅନୁବାଦ କଲାବେଳେ ସେ ଏଥିପ୍ରତି ଥିଲେ ସମ୍ପୂର୍ଣ୍ଣ ସଚେତନ । ତେଣୁ 'ବିଜ୍ଞାପନ'ରେ ସେ ଲେଖିଛନ୍ତି ।

"ଏକଥା ଯଥାର୍ଥ ଅଟେ ଯେ କେବଳ କ୍ରିୟାମାତ୍ର ପରିବର୍ତ୍ତନ କରି ଦେଲେ ବଙ୍ଗଲା ଉଡ଼ିୟା ହୋଇଯାଏ । ମାତ୍ର ଜୀବନ ଚରିତ ପରି ପୁସ୍ତକ ସକଳରେ ନିରବଚ୍ଛିନ୍ନ ମୂଳବାକ୍ୟ ନିୟମର ଏକାନ୍ତ ବଶବର୍ତ୍ତୀ ହୋଇ ଚଳିଲେ ଅନେକ ସ୍ଥଳରେ ଉତ୍କଳ ଭାଷାର ଠିକ୍ ଭାବରକ୍ଷା ପାଏନାହିଁ । ଆମ୍ଭେ ଯେ, ଏହି ଦୋଷରୁ ମୁକ୍ତ ହୋଇ ଅଛୁଁ ଏକଥା ସାହସ କରି କହିପାରୁ ନାହୁଁ । ମାତ୍ର ସାବଧାନତା ଅବଲମ୍ବନ କରିବାକୁ ତ୍ରୁଟି କରିନାହୁଁ ।"

[ଜୀବନ ଚରିତ; ବିଜ୍ଞାପନ]

ତଥାପି 'ଜୀବନ ଚରିତ' ଏବଂ 'ଛମାଣ ଆଠଗୁଣ୍ଠ' ମଧ୍ୟରେ ଭାଷାଗତ ପାର୍ଥକ୍ୟ ଯେକୌଣସି ଆଲୋଚକ ଅନାୟାସରେ ଲକ୍ଷ୍ୟ କରିପାରିବେ । ଏପରିକି 'ଜୀବନ ଚରିତ'ର ଆରମ୍ଭ ଓ ଶେଷ ପର୍ଯ୍ୟାୟର ଭାଷା ମଧ୍ୟରେ ସୂକ୍ଷ୍ମ କିନ୍ତୁ ପାର୍ଥକ୍ୟ ଲକ୍ଷଣୀୟ । ଏକ ସଚେତନ ଶିଳ୍ପୀମାନସର ବିଶୁଦ୍ଧ ଓଡ଼ିଆ ଭାଷା ପ୍ରୟୋଗ ପାଇଁ ବ୍ୟାକୁଳତା ଓ ଅଧ୍ୟବସାୟ ଏଥିରୁ ସୁସ୍ପଷ୍ଟ ।

ପାଠକମାନଙ୍କର ଅବଗତି ପାଇଁ ଏଠାରେ ଦୁଇଟି ଅଂଶର ମୂଳ ଓ ଅନୁବାଦ ଉଦ୍ଧାର କରାଗଲା :

"ଖ୍ରୀଷ୍ଟୀୟ ଶାକ ପ୍ରାରମ୍ଭେର ଛୟଶତ ବତ୍ସର ପୂର୍ବେ, ଏନାକ୍ସିମେଣ୍ଡର, ପିଥାଗୋରସ ପ୍ରଭୃତି ଗ୍ରୀସ୍ ଦେଶୀୟ ପଣ୍ଡିତଗଣେର ମନେ ଅନତିପରିସ୍ଫୁଟ ରୂପେ ଏଇ ଉଦୟ ହଇୟାଛିଲ ଯେ, ସୂର୍ଯ୍ୟ ଅଚଳ ପଦାର୍ଥ; ପୃଥିବୀ ଏକଟି ଗ୍ରହ, ଅନ୍ୟାନ୍ୟ ଗ୍ରହବତ୍ ଯଥାନିୟମେ ସୂର୍ଯ୍ୟେର ଚତୁର୍ଦ୍ଦିକେ ପରିଭ୍ରମଣ କରେ । ତାଁହାରା ସାହସ ପୂର୍ବକ ଆପନାଦେର ଏଇ ବିଶୁଦ୍ଧ ମତ ପ୍ରଚାର କରିୟାଛିଲେନ, କିନ୍ତୁ ତତ୍କାଲ ପ୍ରଚଲିତ ଧର୍ମଶାସ୍ତ୍ରେର ସହିତ ସମ୍ପୂର୍ଣ୍ଣ ବିସମ୍ବାଦିତା ପ୍ରଯୁକ୍ତ, ସର୍ବସାଧାରଣ ଲୋକେ ଯତ୍ପରୋନାସ୍ତି ବିଦ୍ୱେଷ ପ୍ରଦର୍ଶନ କରାତେ, ବଦ୍ଧମୂଳ କରିତେ ପାରେନ ନାଇ ।"

"ଚତୁର୍ଦ୍ଦଶ ପଞ୍ଚଦଶ ଶତାବ୍ଦୀତେ ଇଟାଲିଦେଶେ ବିଦ୍ୟାନୁଶୀଲନେର ପୁନରାରମ୍ଭ ହଇଲେ ତତ୍ରତ୍ୟ ଯାବତୀୟ ବିଶ୍ୱବିଦ୍ୟାଲୟେ ଜ୍ୟୋତିର୍ବିଦ୍ୟାର କିଞ୍ଚିତ୍ କିଞ୍ଚିତ୍ ଆଦର ହଇତେ ଲାଗିଲ । କିନ୍ତୁ ତତ୍କାଲେ ଯେ ମତ ପ୍ରଚଲିତ ଛିଲ, ତାହା ଆରିଷ୍ଟଟଲ, ଅଲେମି ଓ ଅପରାପର ପ୍ରାଚୀନ ଜ୍ୟୋତିର୍ବିଦ୍‌ଗଣେର ଅନୁମୋଦିତ ପ୍ରଣାଳୀ ଅପେକ୍ଷା ବିଶୁଦ୍ଧ ଛିଲନା । ତାହାତେ ଏଇ ସିଦ୍ଧାନ୍ତ ପ୍ରତିପନ୍ନ ଛିଲ, ସୂର୍ଯ୍ୟ ଓ ଗ୍ରହମଣ୍ଡଳ ଭୂମଣ୍ଡଳେର ଚତୁର୍ଦ୍ଦିକେ ପରିଭ୍ରମଣ କରେ । ଯାହା ହଉକ୍, ପରିଶେଷେ ଏନାକ୍ସିମେଣ୍ଡର ଓ ପିଥାଗୋରସେର ବିଶୁଦ୍ଧ ମତ ପୁନରୁଜ୍ଜୀବିତ ହଇବାର ଶୁଭ ସମୟ ଉପସ୍ଥିତ ହଇଲ ।"

[ଜୀବନ ଚରିତ : ପୃ ୧୨୫]

ଓଡ଼ିଆ ଅନୁବାଦ :

ମସୀହ ଜନ୍ମ ଛଅଶତ ବର୍ଷ ପୂର୍ବରେ ଏନାକ୍‌ସିମେଣ୍ଡର ଓ ପିଥାଗୋରସ ପ୍ରଭୃତି ଗ୍ରୀସଦେଶୀୟ ପଣ୍ଡିତମାନଙ୍କ ମନରେ ଅନତି ପରିସ୍ଫୁଟ ରୂପେ ଏହି ବୋଧୋଦୟ ହୋଇଥିଲା ଯେ ସୂର୍ଯ୍ୟ ଅଚଳ ପଦାର୍ଥ; ପୃଥିବୀ ଏକ ଗ୍ରହ ଅନ୍ୟାନ୍ୟ ଗ୍ରହପରି ଯଥାନିୟମରେ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଭ୍ରମଣ କରେ । ସେମାନେ ସାହସ ପୂର୍ବକ ସ୍ୱକୀୟ ବିଶୁଦ୍ଧ ମତ ପ୍ରକାଶ କରିଥିଲେ; କିନ୍ତୁ ତତ୍କାଳ ପ୍ରଚଳିତ ଧର୍ମଶାସ୍ତ୍ର ସମ୍ମତ ଅନୈକ୍ୟ ପ୍ରଯୁକ୍ତ ସାଧାରଣ ଲୋକମାନେ ବିଦ୍ୱେଷ ପ୍ରଦର୍ଶନ କରିବାରୁ ବଦ୍ଧମୂଳ କରିପାରିଲେ ନାହିଁ । ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତାବ୍ଦୀରେ ଗ୍ରୀସ ଦେଶରେ ବିଦ୍ୟାନୁଶୀଳନ ପୁନରାରମ୍ଭ ହେଲେ ସକଳ ବିଶ୍ୱବିଦ୍ୟାଳୟରେ ଜ୍ୟୋତିର୍ବିଦ୍ୟାର କିଞ୍ଚିତ୍ କିଞ୍ଚିତ୍ ଆଦର ହେବାକୁ ଲାଗିଲା । କିନ୍ତୁ ସେ ସମୟରେ ଯେ ମତ ପ୍ରଚଳିତଥିଲା ତାହା ଅରିଷ୍ଟୋଟଲ୍ ଓ ଆଉ ଆଉ ପ୍ରାଚୀନ ଜ୍ୟୋତିର୍ବିଦ୍‌ଗଣର ଅନୁମୋଦିତ ପ୍ରଣାଳୀଠାରୁ ବିଶୁଦ୍ଧ ଥିଲା ନାହିଁ । ସେଥିରେ ଏହି ସିଦ୍ଧାନ୍ତ ପ୍ରତିପନ୍ନ ଥିଲା ଯେ, ସୂର୍ଯ୍ୟ ଓ ଗ୍ରହ ମଣ୍ଡଳ ମେଦିନୀର ଚତୁର୍ଦ୍ଦିଗରେ ପରିଭ୍ରମଣ କରନ୍ତି । ଯାହା ହେଉ ଏ ଏନାକ୍‌ସିମେଣ୍ଡର ଓ ପିଥାଗୋରସ ଏହି ଦୁଇ ଜଣଙ୍କର ସଂକଳ୍ପିତ ବିଶୁଦ୍ଧମତ ପୁନରୁତ୍ଥିତ ହେବାର ଶୁଭ ସମୟ ଉପସ୍ଥିତ ହେଲା ।"

[ଜୀବନ ଚରିତ : ଫକୀର ମୋହନ; ପୃ ୧-୨

ଏବଂ

"ସର ଉଇଲିୟମ ଜୋନ୍‌ସେର ଅକାଳମୃତ୍ୟୁତେ ସର୍ବସାଧାରଣେର ଯେରୂପ ଅସାଧାରଣ ମନସ୍ତାପ ଓ କ୍ଷତିବୋଧ ହଇୟାଛେ, ଅତି ଅଳ୍ପ ଲୋକେର ବିଷୟେ ସେ ରୂପ ଦେଖିତେ ପାଓୟା ଯାୟ । ଭାଷାଜ୍ଞାନ ବିଷୟେ, ବୋଧ ହୟ, ପ୍ରାୟ କୋନଓ ବ୍ୟକ୍ତିଇ ତାହା ଅପେକ୍ଷା ଅଧିକ ପ୍ରବୀଣ ଛିଲେନ ନା । ପୁରାବୃତ୍ତ, ଦର୍ଶନଶାସ୍ତ୍ର, ସ୍ମୃତି, ଧର୍ମସଂକ୍ରାନ୍ତ ଗ୍ରନ୍ଥ, ପଦାର୍ଥବିଦ୍ୟା

ଓ ସର୍ବଜାତୀୟ ଆଗୁର ବ୍ୟବହାର ବିଷୟେ ତାହାର ଅସାଧାରଣ ଜ୍ଞାନ ଥିଲ; ଆଉ, ଯଦି ସେ ଭିନ୍ନଦେଶୀୟ କାବ୍ୟର ଭାବ ଲଇଯାଇ ସ୍ୱଭାଷାୟ ସଂକଲନେ ଅଧିକ ଅନୁରକ୍ତ ନା ହଇତେନ ଏବଂ ବହୁବିସ୍ତୃତ ବିଷୟକର୍ମ ନିର୍ବାହ କରିଯା; ଆପନ ଶକ୍ତ୍ୟାନୁଯାୟୀ ରଚନା ବିଷୟେ ପ୍ରଯତ୍ନବାନ ହଇବାର ନିମିତ୍ତ ଉପଯୁକ୍ତ ରୂପ ଅବକାଶ ପାଇତେନ, ତାହା ହଇଲେ, ତାଁହାର କବିତ୍ୱବିଷୟେଓ ଅସାଧାରଣ ଖ୍ୟାତିଲାଭେର ଭୂୟସୀ ସମ୍ଭାବନା ଛିଲ। ତିନି ପରିବାର ଓ ପୋଷ୍ୟବର୍ଗେର ପ୍ରତି ଯେରୂପ ବ୍ୟବହାର କରିତେନ ତାହା ଅତି ପ୍ରଶଂସନୀୟ। ତିନି ସ୍ୱଭାବତଃ ବଦାନ୍ୟ ଓ ତେଜସ୍ୱୀ ଛିଲେନ୍।"

[ଜୀବନ ଚରିତ; ପୃ ୧୬୯-୧୭୦]

ଓଡ଼ିଆ ଅନୁବାଦ :

'ସର ୱିଲିୟମଙ୍କ ମୃତ୍ୟୁରେ ସର୍ବସାଧାରଣର ଯେପ୍ରକାର ଅସାଧାରଣ ମନସ୍ତାପ ଓ କ୍ଷତି ବୋଧ ହୋଇଅଛି, ଅତି ଅଳ୍ପ ଲୋକ ବିଷୟରେ ସେପରି ଦେଖାଯାଏ। ଭାଷାଜ୍ଞାନ ବିଷୟରେ ବୋଧହୁଅଇ ପ୍ରାୟ ତାହାଙ୍କପରି ସେ ସମୟରେ କେହି ଲୋକ ଥିଲା ନାହିଁ ପୁରାବୃତ୍ତ, ଦର୍ଶନଶାସ୍ତ୍ର, ସ୍ମୃତି, ଧର୍ମସଂକ୍ରାନ୍ତ ଗ୍ରନ୍ଥ, ପଦାର୍ଥବିଦ୍ୟା ଓ ସର୍ବଜାତୀୟ ଆଗୁର ବ୍ୟବହାର ବିଷୟରେ ତାହାଙ୍କର ଅସାଧାରଣ ଜ୍ଞାନ ଥିଲା। ଆଉ ଯଦି ସେ ଭିନ୍ନଦେଶୀୟ କାବ୍ୟର ଭାବ ନେଇ ସ୍ୱଭାଷାରେ ସଂକଳନ ନିମନ୍ତେ ଏତେ ଅନୁରକ୍ତ ନ ହୋଇଥାଆନ୍ତେ ଏବଂ ବହୁବିସ୍ତୃତ କର୍ମ ନିର୍ବାହ କରି ଆପଣାର ଶକ୍ତ୍ୟନୁଯାୟିନୀ ରଚନା ବିଷୟରେ ପ୍ରଯତ୍ନବାନ୍ ହେବା ନିମନ୍ତେ ଉପଯୁକ୍ତ ରୂପ ଅବକାଶ ପାଇଥାଆନ୍ତେ, ତାହାହେଲେ ତାହାଙ୍କର କବିତ୍ୱ

ବିଷୟରେ ମଧ୍ୟ ଅସାଧାରଣ ଖ୍ୟାତି ଲାଭର ଭୂୟସୀ ସମ୍ଭାବନା ଥିଲା । ସେ ପରିବାର ଓ ପୋଷ୍ୟବର୍ଗରେ ପ୍ରତି ଯେପ୍ରକାର ବ୍ୟବହାର କରନ୍ତି ତାହା ଅତି ପ୍ରଶଂସନୀୟ । ସେ ସ୍ୱଭାବରେ ବଦାନ୍ୟ ଓ ତେଜସ୍ୱୀ ଥିଲେ ।"

[ଜୀବନ ଚରିତ : ଫକୀରମୋହନ; ପୃ ୮୪]

—୭—

ଫକୀରମୋହନ ସ୍ୱଭାବସୁଲଭ ଭାବପ୍ରବଣତାର ବଶବର୍ତ୍ତୀ ହୋଇ ଈଶ୍ୱରଚନ୍ଦ୍ରଙ୍କ 'ଜୀବନ ଚରିତ'କୁ ସରଳ ଓ ମାର୍ଜିତ ଓଡ଼ିଆ ଭାଷାରେ ରୂପଦେବା ପାଇଁ ଚେଷ୍ଟା କରିଛନ୍ତି; କିନ୍ତୁ ଏଥିରେ ସେ ସମ୍ପୂର୍ଣ୍ଣ ସଫଳତା ଲାଭ କରିପାରିଛନ୍ତି ବୋଲି କହିବା ସମ୍ଭବ ହୋଇପାରୁ ନାହିଁ; ନ ହେବା ସ୍ୱାଭାବିକ ମଧ୍ୟ । ୧୮୬୭ ପୂର୍ବରୁ ଓଡ଼ିଆ ଗଦ୍ୟ ଏକ ସାହିତ୍ୟିକ ମର୍ଯ୍ୟାଦା ସମ୍ପନ୍ନ ରୂପ ପରିଗ୍ରହ କରିବାରେ ସମର୍ଥ ହୋଇପାରିନଥିଲା । 'ରୁଦ୍ରସୁଧାନିଧି', 'ଚତୁର ବିନୋଦ', 'ପ୍ରସ୍ତାବ ଚିନ୍ତାମଣି', 'ହାସ୍ୟ କଲ୍ଲୋଳ' ପ୍ରଭୃତି ମଧ୍ୟଯୁଗୀୟ ଗଦ୍ୟଗ୍ରନ୍ଥଗୁଡ଼ିକର ଭାଷା ଥିଲା ପଦ୍ୟ ପ୍ରଭାବିତ । ଏହା ବ୍ୟତୀତ ଏ ସମୟର ଅନ୍ୟାନ୍ୟ ଗଦ୍ୟ ରଚନା କଥିତ ଭାଷା ଓ ପଦ୍ୟବନ୍ଧ ଗଦ୍ୟର ସମନ୍ୱୟରେ ଏକ ଅଦ୍ଭୁତ ରୂପ ଧାରଣ କରିଥିଲା । ଏଣୁ ଆଧୁନିକ ଗଦ୍ୟର ବିକାଶରେ ଏ ସବୁର ଭୂମିକା ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେ ।

ମିଶନାରୀମାନେ ହିଁ ଏ ଦେଶରେ ଏକ ଅଭିନବ ଗଦ୍ୟଶୈଳୀର ସୂତ୍ରପାତ କରିଥିଲେ । ଏମାନଙ୍କ ପ୍ରେରଣା ଓ ପ୍ରରୋଚନାରେ ସେ ସମୟରେ ଅନ୍ୟ ଯେଉଁ ବଙ୍ଗାଳୀ ଓ ଓଡ଼ିଆମାନେ ଓଡ଼ିଆ ଗଦ୍ୟ ରଚନାରେ ହାତ ଦେଇଥିଲେ ସେମାନେ ବଙ୍ଗଳା ଗଦ୍ୟଭାଷା ସହିତ ଥିଲେ ଅଧିକ ପରିଚିତ । ଏମାନଙ୍କ ଭାଷାର ସ୍ୱରୂପ ପୂର୍ବ ଉଦାହରଣମାନଙ୍କରୁ ଅନୁମେୟ । ଏଣୁ ଫକୀରମୋହନଙ୍କ ନିକଟରେ ବିଶୁଦ୍ଧ ଓଡ଼ିଆ ଗଦ୍ୟ ଭାଷାର ଆଦର୍ଶ ବୋଲି କିଛି ନଥିଲା । ପୁଣି ସେ ଥିଲେ ବାଲେଶ୍ୱରର ବାସିନ୍ଦା; ବଙ୍ଗଳା ମିଶ୍ରିତ ଓଡ଼ିଆ ଥିଲା ତାଙ୍କର କଥୋପକଥନର ଭାଷା । ଏଣୁ 'ଜୀବନ ଚରିତ'ର ଭାଷାକୁ ବଙ୍ଗଳାଠାରୁ ଦୂରେଇ ନେଇ ଏକ ମାର୍ଜିତ ଓଡ଼ିଆ ରୂପ ଦେବାପାଇଁ ସେ ବଦ୍ଧପରିକର ଥିଲେ ସୁଦ୍ଧା, କାର୍ଯ୍ୟରେ ତାହା ପରିଣତ କରିପାରି ନାହାନ୍ତି ।

ଥିଲା ନାହିଁ (ଛିଲ ନା), କରିବାକୁ ପାରୁଯାଏ (କରିତେ ପାର ଯାୟ), ବୋଧଥିଲା ( ବୋଧ ଛିଲ ) ଘଟି ଉଠେ ନାହିଁ (ଘଟିୟା ଉଠେ ନା), କରି କର୍ତ୍ତବ୍ୟ ( କରା କର୍ତ୍ତବ୍ୟ ) ଉପକାର ପ୍ରଦର୍ଶିବ ନାହିଁ ( ଉପକାର ଦର୍ଶିବେ ନା ) ପରି ବହୁ ବଙ୍ଗଳା କ୍ରିୟାର ଅନୁରୂପ ପ୍ରୟୋଗ ଏଥିରେ ଅନୁସନ୍ଧାନ କରିବା ଦୁରୂହ ନୁହେ । ଏ ପ୍ରକାର କ୍ରିୟା ପ୍ରୟୋଗ ସେ ସମୟରେ ବାଲେଶ୍ୱରୀ କଥିତ ଓଡ଼ିଆ ଭାଷାରେ ସୁପ୍ରଚଳିତ ଥିଲା ।

ସେହିପରି ଈଶ୍ୱରଚନ୍ଦ୍ରଙ୍କ ବାକ୍ୟଗୁଡ଼ିକୁ ଅନୁବାଦରେ କେତେକ ସ୍ଥାନରେ ଅବିକଳ ଭାବେ ରକ୍ଷା କରିବା ପାଇଁ ମଧ୍ୟ ପ୍ରୟାସ କରାଯାଇଛି । ଫକୀରମୋହନ, ବୋଧହୁଏ, ଅନୁବାଦ କରିସାରିବା ପରେ ତାର ଭାଷାର ଓଡ଼ିଆତ୍ୱ ସମ୍ପର୍କରେ ଆଉ ଚିନ୍ତା କରିନାହାନ୍ତି । ଯେପରି 'ସେହି ବିଦ୍ୟାରେ ଏମନ୍ତ ପ୍ରତିଷ୍ଠା ଲାଭ କରି ଅଛନ୍ତି ଯେ ତାହାର ଲୋପ ନହେଲେ ତାଙ୍କର ସେହି ପ୍ରତିଷ୍ଠା ଅପଚୟ ସମ୍ଭାବନା ନାହିଁ ।' କିମ୍ବା 'ତୁମ୍ଭେ ଲୁନବାଲରେ କେହି କେହି ସମୟରେ ଆମ୍ଭ ସହିତ ସାକ୍ଷାତ କରିବ ।' କିମ୍ବା 'ତାହାଙ୍କର ସନ୍ନିଧାନାବସ୍ଥାନକୁ କାରାବାସ କ୍ଲେଶରୂପ ଅନ୍ଧତମସରେ ଦିବାକରୋଦୟ ରୂପ ବର୍ଣ୍ଣନା କଲେ ।' ପ୍ରଭୃତି ।

ଅନୁରୂପ ଭାବେ ସମ୍ମାନିତ ବ୍ୟକ୍ତିମାନଙ୍କ ପାଇଁ ଏକବଚନର ବିଭକ୍ତି ଚିହ୍ନ ପ୍ରୟୋଗ, ବର୍ତ୍ତମାନ କାଳର କ୍ରିୟାର ଏକତ୍ର ପ୍ରୟୋଗ ('କିନ୍ତୁ ଏହିମାତ୍ର ବିଶେଷ ଯେ, ସେ ସେମାନଙ୍କର ପ୍ରାୟ ସକଳ ଲୋକଠାରୁ ସମଧିକ ବିଦ୍ୱାନ ଥିଲେ । ଏବଂ ବିଦ୍ୟାନୁଶୀଳନ ଦ୍ୱାରା ସମୟ ଯାପନ କରନ୍ତି ।'), ବିରାମ ଚିହ୍ନର ଅସ୍ଥାନ ପ୍ରୟୋଗ ପ୍ରଭୃତି କେତେକ ଭାଷାଗତ ତ୍ରୁଟି ବିଚ୍ୟୁତି ମଧ୍ୟ ଏଥିରେ ଲକ୍ଷ୍ୟ କରାଯାଇପାରେ । କିନ୍ତୁ ପ୍ରାଥମିକ ସ୍ତରରେ, ପୁଣି ବଙ୍ଗଳା ଗ୍ରନ୍ଥକୁ ଆଖି ଆଗରେ ରଖି ଯଥାଶୀଘ୍ର ପୁସ୍ତକଟିଏ ପ୍ରକାଶ କରିବାକୁ ଗଲେ ଏପରି ଦୋଷ ଦୁର୍ବଳତା ଏକାନ୍ତ ସ୍ୱାଭାବିକ ।

ଉପର୍ଯ୍ୟୁକ୍ତ ସମସ୍ତ ତ୍ରୁଟି ବିଚ୍ୟୁତି ସତ୍ତ୍ୱେ ଫକୀରମୋହନଙ୍କ ଏହି ଆବେଗମୟ ପ୍ରୟାସ ଯେ ନିଶ୍ଚିତ ଭାବେ ପ୍ରଶଂସନୀୟ, କହିବା ବାହୁଲ୍ୟ ମାତ୍ର । ପୂର୍ବବର୍ତ୍ତୀ ସାହିତ୍ୟ ଓ ସାହିତ୍ୟେତର ଗଦ୍ୟଭାଷାକୁ ଯେ ଯେ

ଯଥାସମ୍ଭବ ମାର୍ଜିତ ରୂପ ଦେଇଛନ୍ତି ଏଥିରେ ସନ୍ଦେହ ନାହିଁ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଫକୀରମୋହନ ଯେଉଁଠି ବଙ୍ଗଳା ଗ୍ରନ୍ଥର ଅନୁବାଦ କରିଛନ୍ତି କିମ୍ବା ବଙ୍ଗଳା ଗ୍ରନ୍ଥର ଆଦର୍ଶରେ କିଛି ଲେଖିବା ପାଇଁ ଚେଷ୍ଟା କରିଛନ୍ତି, ସେଠାରେ ସେ ଏପରି ସମସ୍ୟାର ସମ୍ମୁଖୀନ ହୋଇଛନ୍ତି । ପରବର୍ତ୍ତୀ ସମୟର 'ଭାରତବର୍ଷର ଇତିହାସ' ମଧ୍ୟ ବହୁ ଦୋଷ ଦୁର୍ବଳତାରୁ ମୁକ୍ତ ହୋଇପାରି ନାହିଁ । ଏଥିପାଇଁ ସେ କମ୍ ସମାଲୋଚିତ ହୋଇ ନାହାନ୍ତି, (ଉତ୍କଳ ଦୀପିକା—୧୦-୪-୧୮୬୯) କିନ୍ତୁ ଯେଉଁଠାରେ ସେ ବଙ୍ଗଳା ଗ୍ରନ୍ଥର ବିନା ସହାୟତାରେ କିଛି ଲେଖିଛନ୍ତି ସେଠାରେ ତାଙ୍କର ଗଦ୍ୟ ଭାଷା ଯେପରି ମାର୍ଜିତ ସେପରି ସୁଖପାଠ୍ୟ ଓ ଲାଳିତ୍ୟବ୍ୟଞ୍ଜକ । 'ଜୀବନ ଚରିତ' ପରେ ତାଙ୍କ 'ଭାରତବର୍ଷର ଇତିହାସ' ୨ୟ ଭାଗର ଏକ କ୍ଷୁଦ୍ର ଅଂଶ ଏଠାରେ ଲକ୍ଷ୍ୟ କରନ୍ତୁ ।

> "ଚିରକାଳ ସମାନ ଯାଏ ନାହିଁ, ସଂସାରର ସମସ୍ତ ବସ୍ତୁ ଅନିତ୍ୟ, ଶୁକ୍ଳ କୃଷ୍ଣ ପକ୍ଷ ପରି ସୁଖ ଦୁଃଖ ପରିବର୍ତ୍ତନଶୀଳ "ଚକ୍ରବତ୍ ପରି ଭ୍ରମନ୍ତି ଦୁଃଖାନି ଚ, ସୁଖାନି ଚ" କାହା ଅଦୃଷ୍ଟରେ କେତେବେଳେ କ ଘଟିବ ତାହା କିଏ କହିପାରେ । ଯେ ସାହାଜାହାନ ମଣ୍ଟି ସିଂହାସନକୁ ମଣିମାଣିକ୍ୟରେ ବିଭୂଷିତ କରିଥିଲେ, ଯାହାଙ୍କର ନିର୍ମିତ ତାଜମହଲ ପୃଥିବୀର ସର୍ବଶ୍ରେଷ୍ଠ ଶିଳ୍ପ କର୍ମ ବୋଲି ବିଖ୍ୟାତ ହୋଇଅଛି ଓ ଯାହାଙ୍କର ଦୌର୍ଦ୍ଦଣ୍ଡ ପ୍ରତାପରେ ଭାରତ ଭୂମି କମ୍ପିତ ହୋଇଥିଲା; ସେହି ସାହାଜାହାନ ବନ୍ଦୀ ଦଶାରେ ଦେହ ତ୍ୟାଗ କରିବେ ଏ କଥା କାହା ମନରେ ଥିଲା । ସାମାନ୍ୟ ଦସ୍ୟୁ ଦଳପତି ଶିବାଜୀ ଦାକ୍ଷିଣାତ୍ୟରେ ସ୍ୱାଧୀନ ରାଜା ହେବା ମଧ୍ୟ ସେହିପରି କଥା । ଦୁର୍ଦ୍ଧର୍ଷ ତୈମୁର ବା ଆଉରଙ୍ଗଜେବ ଅଥବା ମହାମହିମ ଆକବର କେଉଁଠାରେ ? ସେମାନଙ୍କର କାର୍ଯ୍ୟକଳାପ ଧରାଧାମରେ ଦେଦୀପ୍ୟମାନ ରହିଅଛି । ମନୁଷ୍ୟମାନେ କି ଅପରିଣାମଦର୍ଶୀ, ସଂସାରର ଭାବଗତି ଜାଣି ମଧ୍ୟ କୁକର୍ମରେ ପ୍ରବୃତ୍ତ ହେଉଅଛନ୍ତି । ଏହାଠାରୁ ଆଉ କି ଆଶ୍ଚର୍ଯ୍ୟ ହୋଇପାରେ ।"

[ଭାରତ ବର୍ଷର ଇତିହାସ (୨ୟ ଭାଗ); ପୃ. ୧୧-୧୨]

'ଜୀବନ ଚରିତ', 'ଭାରତବର୍ଷର ଇତିହାସ' ଓ 'ଛମାଣ ଆଠଗୁଣ୍ଠ'ର ଗଦ୍ୟ ଭାଷାକୁ ତୁଳନାତ୍ମକଭାବେ ଅଧ୍ୟୟନ କଲେ ଜାତିପ୍ରୀତି ଅଙ୍ଗୀକାରବଦ୍ଧ ଫକୀରମୋହନଙ୍କ ଦୃଢ଼ ମନୋବଳ ତଥା ନିଷ୍ଠାପର ଅଧ୍ୟବସାୟର ସ୍ୱରୂପ କଳନା କରିହେବ ।

—୭—

'ଜୀବନ ଚରିତ' ୧୮୭୭ ମସିହାରେ କଲିକତା ବାପଟିଷ୍ଟ ମିଶନ ପ୍ରେସରେ ମୁଦ୍ରିତ ହୋଇଥିଲା । ଫକୀରମୋହନ ବୋଧହୁଏ ଏହାର ପ୍ରୁଫ୍ ସଂଶୋଧନ କରିବା ପାଇଁ ସୁଯୋଗ ପାଇନଥିଲେ । ଫଳରେ ଗ୍ରନ୍ଥଟିରେ କେତେକ ମୁଦ୍ରଣ ଜନିତ ତ୍ରୁଟି ଦେଖିବାକୁ ମିଳେ । ଲେଖକ ମଧ୍ୟ ଏ ସମ୍ପର୍କରେ ଗ୍ରନ୍ଥର 'ବିଜ୍ଞାପନ'ରେ ସୂଚନା ଦେଇଛନ୍ତି । ଅଧିକାଂଶ ସ୍ଥଳରେ ବଂଗଳା ଉଚ୍ଚାରଣ ଅନୁରୂପ 'ଳ' ସ୍ଥାନରେ 'ଲ' ମୁଦ୍ରିତ ହୋଇଥିବା ଦେଖାଯାଏ । ଆଉ କେତେକ ସ୍ଥଳରେ ସାଧାରଣ ମୁଦ୍ରଣ ଜନିତ ତ୍ରୁଟି ମଧ୍ୟ ପରିଲକ୍ଷିତ ହୁଏ । ପ୍ରସ୍ତୁତ ସଂସ୍କରଣଟିକୁ ଅବିକୃତଭାବେ ପାଠକମାନଙ୍କ ନିକଟରେ ଉପସ୍ଥାପନ କରିବାର ଲକ୍ଷ୍ୟ ଥିବାଯୋଗୁଁ 'ଳ', 'ଲ', 'ଶ', 'ସ', 'ଯ', 'ଜ' ପ୍ରଭୃତିର ସଂସ୍କାର କରିବା ପାଇଁ ଅପଚେଷ୍ଟା କରାଯାଇନାହିଁ । କେବଳ ସ୍ପଷ୍ଟ ମୁଦ୍ରଣଗତ ତ୍ରୁଟିଗୁଡିକର ସଂଶୋଧିତ ରୂପ ବନ୍ଧନୀ ମଧ୍ୟରେ ପ୍ରଦାନ କରାଯାଇଛି । ଫକୀରମୋହନଙ୍କ ସାହିତ୍ୟ ଓ ବ୍ୟକ୍ତିତ୍ୱ ଅନୁଶୀଳନରେ ଏହି ପୁସ୍ତକଟି ନିଶ୍ଚିତ ଭାବେ ସହାୟକ ହେବ ବୋଲି ବିଶ୍ୱାସ ।

ସୁଦର୍ଶନ ଆଚାର୍ଯ୍ୟ

# ସୂଚିପତ୍ର

# ଜୀବନ ଚରିତ ।

ଶ୍ରୀ ଫକୀର ମୋହନ ସେନାପତ

ପ୍ରଣୀତ ।

ବାଲେଶର

---

# BIOGRAPHY,

TRANSLATED INTO ORIYA

FROM

ESHWAR CHANDRA VIDYASAGAR'S

BENGALI BOOK.

---

PHUKEER MOHUN SENAPUTY,

*Balasore*

---

CALCUTTA:

PRINTED AT THE BAPTIST MISSION PRESS.

1866.

# ଜୀବନ ଚରିତ।

## ନିକୋଲସ କୋପର୍ଣ୍ଣିକସ।

ପୂର୍ବକାଳରେ କାଲ୍‌ଡିଆ, ମିଶର, ଗ୍ରୀସ ପ୍ରଭୃତି ନାନା ଦେଶରେ ଜ୍ୟୋତିର୍ବିଦ୍ୟାର ବିଲକ୍ଷଣ ଅନୁଶୀଳନ ଥିଲା; କିନ୍ତୁ ମସୀହର ଷୋଡ଼ଶ ଶତାବ୍ଦୀ ପୂର୍ବରେ ଜ୍ୟୋତିର୍ମଣ୍ଡଳୀର ବିଷୟକ ବିଶୁଦ୍ଧରୂପେ ବିଦିତ ଥିଲା ନାହିଁ। ପୂର୍ବକାଳୀୟ ପଣ୍ଡିତ ମାନଙ୍କର ଏହି ସ୍ଥିର ସିଦ୍ଧାନ୍ତ ଥିଲା ଯେ, ପୃଥିବୀ ସ୍ଥିର ଏବଂ ଅନ୍ତରୀକ୍ଷ ବିକ୍ଷିପ୍ତ ଜ୍ୟୋତିଷ୍କ ମଣ୍ଡଳର ମଧ୍ୟସ୍ଥିତ; ଚନ୍ଦ୍ର, ଶୁକ୍ର, ମଙ୍ଗଳ, ସୂର୍ଯ୍ୟ ଆଦି ୨ ଗ୍ରହଗଣ ଓ ନକ୍ଷତ୍ର ମଣ୍ଡଳ ତାହାର ଚତୁର୍ଦ୍ଦିଗରେ ଏକ ୨ ମଣ୍ଡଳାକାର ପଥରେ ପରିଭ୍ରମଣ କରନ୍ତି; ଆଉ ସେ ମାନଙ୍କର ଦୂରତ୍ୱ ଓ ବେଗର ବିଭିନ୍ନତା ପ୍ରଯୁକ୍ତ, ଦିବସ ଓ ରଜନୀରେ ବ୍ୟୋମମଣ୍ଡଳର ବିଭିନ୍ନ ଆକାର ଦେଖା ଯାଏ। ଏହି ମତ ଇଉରୋପରେ ଅନେକକାଳ ପର୍ଯ୍ୟନ୍ତ ପ୍ରବଳ ଓ ପ୍ରଚଳିତ ଥିଲା।

ମସୀହ ଜନ୍ମ ଛଅଶତ ବରଷ ପୂର୍ବରେ ଏନାକ୍‌ସିମେଣ୍ଡର ଓ ପିଥାଗୋରସ ପ୍ରଭୃତି ଗ୍ରୀସ ଦେଶୀୟ ପଣ୍ଡିତମାନଙ୍କ ମନରେ ଅନତି ପରିସ୍ଫୁଟରୂପେ ଏହି ବୋଧୋଦୟ ହୋଇ ଥିଲା ଯେ ସୂର୍ଯ୍ୟ ଅଚଳ ପଦାର୍ଥ; ପୃଥିବୀ ଏକ ଗ୍ରହ ଅନ୍ୟାନ୍ୟ ଗ୍ରହ ପରି ଯଥାନିୟମରେ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଭ୍ରମଣ କରେ। ସେମାନେ ସାହସ ପୂର୍ବକ ସ୍ୱକୀୟ ବିଶୁଦ୍ଧମତ ପ୍ରକାଶ କରିଥିଲେ; କିନ୍ତୁ

# ବିଜ୍ଞାପନ ।

---

ଏତଦ୍ଦଶୀୟ [ଏତଦ୍ଦେଶୀୟ] ବିଦ୍ୟାଳୟସମୂହର ଊର୍ଦ୍ଧ୍ୱ ଶ୍ରେଣୀରେ ହିତୋପଦେଶ ନାମକ ପୁସ୍ତକ ପଠିତ ହୁଏ ।

ହିତୋପଦେଶ ଯେ ନୀତିଗର୍ଭ ମହାର୍ଘ ବାକ୍ୟପୂର୍ଣ୍ଣ ଏକ ଉତ୍କୃଷ୍ଟ ପୁସ୍ତକ, ତାହା ଆମ୍ଭେ ସ୍ୱୀକାର କରୁଁ । ମାତ୍ର ତାହାର ରଚନା ପ୍ରଣାଳୀ ଯେ ପ୍ରକାର ଜଟିଳ ଓ ଅସଲଗ୍ନ ତଦ୍ଦ୍ୱାରା ସୁକୁମାରମତି ବାଳକବୃନ୍ଦର ସହଜରେ ହୃଦୟଙ୍ଗମ ହେବ ଓ ଭାଷାରେ ବ୍ୟୁତ୍ପତ୍ତି ଜନ୍ମିବ ଏପରି ଆଶା କରା ଯାଇ ପାରେ ନାହିଁ । ଅତଏବ ପଢ଼ୁଆମାନଙ୍କର କଥଞ୍ଚିତ୍ ଏହି ଅଭାବ ପରିହାର ନିମନ୍ତେ ଆମ୍ଭେ ବର୍ତ୍ତମାନ ବଙ୍ଗଳା ଭାଷାର ସୁପ୍ରସିଦ୍ଧ ଗ୍ରନ୍ଥକର୍ତ୍ତା ଶ୍ରୀଯୁତ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ପ୍ରଣୀତ ଜୀବନ ଚରିତ (ପ୍ରଶଂସିତ ମହାତ୍ମାର ଅନୁମତି ଗ୍ରହଣ କରି) ଉତ୍କଳ ଭାଷାରେ ଅନୁବାଦ କଲୁଁ । ଯଦି ବିଦ୍ୟାଳୟର କର୍ତ୍ତୃପକ୍ଷୀୟମାନେ ଅନୁଗ୍ରହ କରି ସ୍ୱ ସ୍ୱ ଅଧୀନସ୍ଥ ବିଦ୍ୟାଳୟ-ସମୂହରେ ଏହି ପୁସ୍ତକ ଚଳାଇବେ, ତେବେ ଆମ୍ଭେ ଏହାର ଦ୍ୱିତୀୟ ସଂସ୍କରଣ ସମୟରେ, ଆଉ ୨ ଗ୍ରନ୍ଥରୁ ସକ୍ରେଟିସ ଓ ଡିମୋଷ୍ଥିନିସ ପ୍ରଭୃତି ମହାତ୍ମାମାନଙ୍କର ଜୀବନ ଚରିତ ସଙ୍କଳନ କରି ଏଥିରେ ସନ୍ନିବେଶିତ କରିବୁଁ ।

ଏହି ପୁସ୍ତକ ମୂଳ ଗ୍ରନ୍ଥର ଅବିକଳ ଅନୁବାଦ ନୁହଇ । ଏକଥା ଯଥାର୍ଥ ଅଟେ ଯେ କେବଳ ସଂଜ୍ଞାମାତ୍ର ପରିବର୍ତ୍ତନ କରି ଦେଲେ ବଙ୍ଗଳା ଉଡ଼ିଆ ହୋଇଯାଏ । ମାତ୍ର ଜୀବନ ଚରିତପରି ପୁସ୍ତକ ସକଳରେ ନିରବଚ୍ଛିନ୍ନ ପୂର୍ବୋକ୍ତ ନିୟମର ଏକାନ୍ତ ବଶବର୍ତ୍ତୀ ହୋଇ ଚଳିଲେ ଅନେକ ସ୍ଥଳରେ ଉତ୍କଳ ଭାଷାର ଠିକ୍ ଭାବ ରକ୍ଷା ପାଏ ନାହିଁ । ଆମ୍ଭେ ଯେ, ଏହି ଦୋଷରୁ ମୁକ୍ତ ହୋଇ ଅଛୁଁ ଏକଥା ସାହସ କରି କହି ପାରୁଁ ନାହୁଁ । ମାତ୍ର ସାବଧାନତା ଅବଲମ୍ବନ କରିବାକୁ ତ୍ରୁଟି କରି ନାହୁଁ । ଏହି ପୁସ୍ତକ ପାଠଦ୍ୱାରା ପଢ଼ୁଆମାନେ ଅନେକ ଉପଦେଶ ପ୍ରାପ୍ତ ହୋଇ ପାରନ୍ତି । ପ୍ରଥମରେ ଏହି ଯେ, ଅତିସାମାନ୍ୟାବସ୍ଥ ଲୋକମାନେ ଶ୍ରଦ୍ଧା ଅବିଶ୍ରାନ୍ତ ପରିଶ୍ରମ ଓ ଅବିଚଳିତ ଅଧ୍ୟବସାୟଦ୍ୱାରା ଆପଣାର ଅବସ୍ଥା କି ପର୍ଯ୍ୟନ୍ତ ଉନ୍ନତ କରି ପାରନ୍ତି । ଦ୍ୱିତୀୟତଃ ପୂର୍ବକାଳୀୟ ଇୟୁରୋପସ୍ଥ ଲୋକମାନଙ୍କର ଆଚାର ବ୍ୟବହାର ରାଜନୀତି ଓ ତାତ୍କାଳିକ ଐତିହାସିକ ବିଷୟ ମଧ୍ୟ କିଛି ୨ ଜଣାଯାଏ ।

ଏସ୍ଥାନରେ ଆମ୍ଭର କୃତଜ୍ଞତା ସ୍ୱୀକାର କରିବା ଉଚିତ ଯେ, ଆମ୍ଭର ପ୍ରିୟ ବନ୍ଧୁ ଶ୍ରୀଯୁତ ବାବୁ ଜୟକୃଷ୍ଣ ମହାପାତ୍ର ଏହି ପୁସ୍ତକ ଆଦ୍ୟୋପାନ୍ତ ପାଠ କରି, ଯେଯେ ସ୍ଥାନରେ ଭୁଲ ଥିଲା ତାହା ସଂଶୋଧନ କରି ଦେଇଅଛନ୍ତି ।

ଏହି ପୁସ୍ତକ ଦୂର ଦେଶରେ ମୁଦ୍ରିତ ହେବାରୁ କୌଣସି ୨ ସ୍ଥାନରେ ବର୍ଣ୍ଣ ଅଶୁଦ୍ଧ ରହି ଯିବାର ସମ୍ଭାବନା । ଅତଏବ ଆମ୍ଭର ଏହି ଅପରାଧ ସହୃଦୟ ପାଠକମାନଙ୍କଠାରେ ଅମାର୍ଜନୀୟ ହୋଇ ପାରେ ନାହିଁ ।

ଇତି ଖ୍ରୀଷ୍ଟାଃ ୧୮୬୭ ସାଲ
ମାର୍ଚ୍ଚ
ବାଲେଶ୍ୱର ମଲ୍ଲିକାଶପୁର

ଶ୍ରୀଫକୀରମୋହନ ସେନାପତି ।

---

# ଜୀବନ ଚରିତ ।



## ନିକଲାସ କୋପର୍ନିକସ ।

ପୂର୍ବକାଳରେ କାଲ୍‌ଡ଼ିୟା ମିଶର, ଗ୍ରୀସ୍ ପ୍ରଭୃତି ନାନା ଦେଶରେ ଜ୍ୟୋତିର୍ବିଦ୍ୟାର ବିଲକ୍ଷଣ ଅନୁଶୀଳନ ଥିଲା; କିନ୍ତୁ ଖ୍ରୀଷ୍ଟୀୟର ଷୋଡ଼ଶ ଶତାବ୍ଦୀ ପୂର୍ବରେ ଜ୍ୟୋତିର୍ମଣ୍ଡଳୀର ବିଷୟକ ବିଶୁଦ୍ଧରୂପେ ବିଦିତ ନ ଥିଲା ନାହିଁ । ପୂର୍ବକାଳୀୟ ପଣ୍ଡିତମାନଙ୍କର ଏହି ସ୍ଥିର ସିଦ୍ଧାନ୍ତ ଥିଲା ଯେ, ପୃଥିବୀ ସ୍ଥିର ଏବଂ ଅନ୍ତରୀକ୍ଷ ବିକ୍ଷିପ୍ତ ଜ୍ୟୋତିଷ୍କ ସକଳର ମଧ୍ୟସ୍ଥିତ; ଚନ୍ଦ୍ର, ଶୁକ୍ର, ମଙ୍ଗଳ, ସୂର୍ଯ୍ୟ ଆଦି ୨ ଗ୍ରହଗଣ ଓ ନକ୍ଷତ୍ର ମଣ୍ଡଳ ତାହାର ଚତୁର୍ଦ୍ଦିଗରେ ଏକ ୨ ମଣ୍ଡଳାକାର ପଥରେ ପରିଭ୍ରମଣ କରନ୍ତି; ଆଉ ସେମାନଙ୍କର ଦୂରତ୍ୱ ଓ ବେଗର ବିଭିନ୍ନତା ପ୍ରଯୁକ୍ତ, ଦିବସ ଓ ରଜନୀରେ ନଭୋମଣ୍ଡଳର ବିଚିତ୍ର ଆକାର ଦେଖାଯାଏ । ଏହି ମତ ଇଉରୋପରେ ଅନେକକାଳ ପର୍ଯ୍ୟନ୍ତ ପ୍ରବଳ ଓ ପ୍ରଚଳିତ ଥିଲା ।

ଖ୍ରୀଷ୍ଟ ଜନମ ଛଅଶତ ବରଷ ପୂର୍ବରେ ଏନାକ୍‌ସିମେଣ୍ଡର ଓ ପିଥାଗୋରସ ପ୍ରଭୃତି ଗ୍ରୀସ୍ ଦେଶୀୟ ପଣ୍ଡିତମାନଙ୍କ ମନରେ ଅନତି ପରିଷ୍ଫୁଟରୂପେ ଏହି ବୋଧୋଦୟ ହୋଇଥିଲା ଯେ ସୂର୍ଯ୍ୟ ଅଚଳ ପଦାର୍ଥ; ପୃଥିବୀ ଏକ ଗ୍ରହ ଅନ୍ୟାନ୍ୟ ଗ୍ରହ ପରି ଯଥାନିୟମରେ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଭ୍ରମଣ କରେ । ସେମାନେ ସାହସ ପୂର୍ବକ ସ୍ୱକୀୟ ବିଶୁଦ୍ଧମତ ପ୍ରକାଶ କରିଥିଲେ; କିନ୍ତୁ ତତ୍କାଳ ପ୍ରଚଳିତ ଧର୍ମଶାସ୍ତ୍ର ସହିତ ଅନୈକ୍ୟ ପ୍ରଯୁକ୍ତ ସାଧାରଣ ଲୋକମାନେ ବିଦ୍ୱେଷ ପ୍ରଦର୍ଶନ କରିବାରୁ ବଦ୍ଧମୂଳ କରିପାରିଲେ ନାହିଁ । ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତାବ୍ଦୀରେ ଗ୍ରୀସ ଦେଶରେ

ବିଦ୍ୟାନୁଶୀଳନ ପୁନରାରମ୍ଭ ହେଲେ (*)ସକଳ ବିଶ୍ୱବିଦ୍ୟାଳୟରେ ଜ୍ୟୋତିର୍ବିଦ୍ୟାର କ୍ରମଶଃ ୨ ଆଦର ହେବାକୁ ଲାଗିଲା । କିନ୍ତୁ ସେ ସମୟରେ ଯେମନ୍ତ ପ୍ରଚଳିତ ଥିଲା ତାହା ଅଶ୍ଟ୍ରାଲେମି ଏବଂ ଆଉ ୨ ପ୍ରାଚୀନ ଜ୍ୟୋତିର୍ବିଦଗଣର ଅନୁମୋଦିତ ପ୍ରଣାଳୀଠାରୁ ବିଶୁଦ୍ଧ ଥିଲା ନାହିଁ । ସେଥିରେ ଏହି ସିଦ୍ଧାନ୍ତ ପ୍ରତିପନ୍ନ ଥିଲା ଯେ, ସୂର୍ଯ୍ୟ ଓ ଗ୍ରହ ମଣ୍ଡଳ ମେଦିନୀର ଚତୁର୍ଦ୍ଦିଗରେ ପରିଭ୍ରମଣ କରନ୍ତି । ଯାହା ହେଉ ଏ ଏନାକ୍ସିମେଣ୍ଡର ଓ ପିଥାଗୋରସ ଏହି ଦୁଇ ଜଣଙ୍କର ସଂକଳିତ ବିଶୁଦ୍ଧମତ ପୁନରୁତ୍ଥିତ ହେବାର ଶୁଭ ସମୟ ଉପସ୍ଥିତ ହେଲା ।

ଯେ ପଣ୍ଡିତ ପୂର୍ବ ନିର୍ଦ୍ଦିଷ୍ଟ ବିଲୁପ୍ତ ପ୍ରାୟ ବିଶୁଦ୍ଧ ମତ ପୁନରୁତ୍ଥିତ କଲେ, ତାହାଙ୍କର ନାମ ନିକଲାସ କୋପର୍ନିକସ୍ । ସେ ମଣୀଷୀ ୧୪୭୩ ସାଲ ଫେବ୍ରୁଆରି ମାସ ୧୯ ତାରିଖରେ, ବିଷ୍ଟୁଲା ନଦୀତୀରବର୍ତ୍ତୀ ଥରନ ନଗରେ ଜନ୍ମ ଗ୍ରହଣ କଲେ, ମାତ୍ର ତାଙ୍କ ପିତାର ଜନ୍ମସ୍ଥାନ ଜର୍ମନିର ଅନ୍ତଃପାତୀ ଓ-ଏଷ୍ଟଫେଲିୟା ନାମକ ସ୍ଥାନରେ ଥିଲା । ସେ ଥରନ ନଗରରେ ଚିକିତ୍ସକ କର୍ମରେ ନିଯୁକ୍ତ ହୋଇ ସେଠାରେ ବାସ କରିବାର ୧୦ ବରଷ ବାଦ କୋପର୍ନିକସ ଜନ୍ମ ଗ୍ରହଣ କଲେ ।

କୋପର୍ନିକସ ବାଲ୍ୟକାଳରେ କ୍ରାକୋର ବିଶ୍ୱ ବିଦ୍ୟାଳୟରେ ଚିକିତ୍ସା ବିଦ୍ୟା ଶିକ୍ଷା କରିଥିଲେ । କିନ୍ତୁ ଗଣିତ, ପରିପ୍ରେକ୍ଷିତ, ଜ୍ୟୋତିଷ, ଚିତ୍ର କର୍ମ ଏହି କେତେ ବିଦ୍ୟାରେ ସେ ସ୍ୱଭାବରେ ଅନୁରାଗୀ ଥିଲେ । ଶୈଶବକାଳରେ ଜ୍ୟୋତିର୍ବିଦ୍ୟାରେ ବିଶେଷ ପ୍ରତିପତ୍ତି ଲାଭାର୍ଥେ ଅତ୍ୟନ୍ତ ଉତ୍ସୁକ ହୋଇ, ଇଟାଲୀର ଅନ୍ତଃପାତୀ ବଲଗ୍ନା ନଗରର ବିଶ୍ୱବିଦ୍ୟାଳୟରେ ଉକ୍ତ ଶାସ୍ତ୍ର ଅଧ୍ୟୟନ କଲେ । ସମସ୍ତେ ଅନୁମାନ କରନ୍ତି ତାହାଙ୍କର ଅଧ୍ୟାପକ ଡୋମେନିକ ମେରିୟା ପୃଥିବୀର ମେରୁଦଣ୍ଡ ପରିବର୍ତ୍ତନ ବିଷୟରେ ଯେ ଆବିଷ୍କ୍ରିୟା କଲେ ତଦ୍ଦ୍ୱାରା ପ୍ରଚଳିତ ଜ୍ୟୋତିର୍ବିଦ୍ୟା ଭ୍ରାନ୍ତି ସଙ୍କୁଳ ବୋଲି ତାହାର ପ୍ରଥମ ଉଦ୍‌ବୋଧ ହେଲା । ଅନନ୍ତର ବଲଗ୍ନାଠାରୁ ରୋମ ନଗରକୁ ପ୍ରସ୍ଥାନ କରି ସେଠାରେ କିଛିକାଳ ସୁଖ୍ୟାତିରୂପେ ଗଣିତ ଶାସ୍ତ୍ରର ଶିକ୍ଷକତା କାର୍ଯ୍ୟ ସମ୍ପାଦନ କଲେ ।

କିଛି ଦିନ ଉତ୍ତାରେ କୋପର୍ନିକସ ସ୍ୱଦେଶକୁ ପ୍ରତ୍ୟାଗମନ କଲେ । ସେ ସମୟରେ ତାହାଙ୍କର ମାତୁଳ ଅର୍ମିଲଣ୍ଡ ବିଶପ (ଧର୍ମାଧ୍ୟକ୍ଷ) ଥିଲେ; ସେ ତାହାଙ୍କୁ ପ୍ରାୟ ନ ବରଷ ପ୍ରଧାନ ଦେବାଳୟର ଯାଜକତା ପଦରେ ନିଯୁକ୍ତ କଲେ । ସେହି ସମୟରେ ଥରନ ନଗରର ଲୋକମାନେ ଶ୍ରଦ୍ଧା ତାହାଙ୍କୁ ଆପଣାମାନଙ୍କର ଏକ

* ପୂର୍ବକାଳେ ଗ୍ରୀସ ଦେଶ ଓ ରୋମରାଜ୍ୟରେ ବିଦ୍ୟାର ବିଲକ୍ଷଣ ଅନୁଶୀଳନ ଥିଲା ମାତ୍ର ରୋମରାଜ୍ୟର ଉଚ୍ଛେଦ ହେବାରୁ ବିଦ୍ୟାନୁଶୀଳନ ଲୋପ ହେଲା । ଅନନ୍ତର ଏହି ସମୟରେ ପୁନର୍ବାର ବିଦ୍ୟାନୁଶୀଳନ ଆରମ୍ଭ ହେଲା ।

ଦେବାଳୟରେ ଦ୍ୱିତୀୟ ଧର୍ମାଧ୍ୟକ୍ଷ ପଦରେ ନିରୂପିତ କଲେ । ଏତେବେଳେ ସେ ଏହି ସଙ୍କଳ୍ପ କଲେ ଯେ, ଦେବାଳୟ ସଂକ୍ରାନ୍ତ କର୍ମ ଓ ବିନାବେତନରେ ଦରିଦ୍ର-ମାନଙ୍କର ଚିକିତ୍ସା ଏବଂ ଅଭିଳଷିତ ବିଦ୍ୟାର ଅନୁଶୀଳନ ଏହି ତିନି ବିଷୟ ଅବଲମ୍ବନ କରି ଜୀବନ କ୍ଷେପଣ କରିବା । ପ୍ରଧାନ ଦେବାଳୟର ଅଦୂରବର୍ତ୍ତୀ ଏକ ଉନ୍ନତ ଭୂଭାଗ ଉପରେ ପ୍ରାୟ ନ ବର୍ଷ ପୂର୍ବ ଯାଜକମାନଙ୍କ କାରଣ ଯେ ସକଳ ବାସସ୍ଥାନ ନିୟୋଜିତ ଅଛି ସେଠାରୁ ଅତ୍ୟୁତ୍କୃଷ୍ଟରୂପେ ଗ୍ରହ ନକ୍ଷତ୍ରାଦି ପର୍ଯ୍ୟବେକ୍ଷଣ କରିବାକୁ ପାରି ଯାଏ । କୋପର୍ନିକସ ତାହାର ଅନ୍ୟତମ ସ୍ଥାନରେ ବାସ ସ୍ଥାନ ନିରୂପଣ କଲେ ।

ଅନୁମାନ ହୁଏ ମଣୀନ୍ଦ୍ରର ୧୫୦୭ ଅବ୍ଦରେ ପିଥାଗୋରସର ମତ ଉତ୍କୃଷ୍ଟ ବୋଲି କୋପର୍ନିକସର ଦୃଢ଼ ପ୍ରତ୍ୟୟ ଜନ୍ମିଲା । କିନ୍ତୁ ତତ୍କାଳୀୟ ଲୋକମାନଙ୍କର ଯେରୂପ କୁସଂସ୍କାର ଥିଲା, ଉକ୍ତମତ ତାହାର ବିପରୀତ । ଏହି ନିମନ୍ତେ ସେ ମନ ମଧ୍ୟରେ ସ୍ଥିର କଲେ ଯେ ଏହି ମତ ଅବଲମ୍ବନ ବା ପ୍ରକାଶ କରିବା ବିଷୟରେ ସାବଧାନ ହେବାକୁ ହେବ । ସେ ସମୟରେ ଦୂରବୀକ୍ଷଣର ସୃଷ୍ଟି ହୋଇଥିଲା ନାହିଁ । ତାହା ଛଡ଼ା ଗଣିତ ବିଦ୍ୟା ସଂକ୍ରାନ୍ତ ଆଉ ଯେ ସକଳ ଯନ୍ତ୍ର ଥିଲା ତାହା ମଧ୍ୟ ଅତ୍ୟନ୍ତ ଅପକୃଷ୍ଟ ଓ କର୍ମର ଅଯୋଗ୍ୟ । କୋପର୍ନିକସ ପର୍ଯ୍ୟବେକ୍ଷଣ ସାଧନ ନିମନ୍ତେ ଯେ ଦୁଇଟା ଯନ୍ତ୍ର ପାଇଥିଲେ ତାହା ଦେବଦାରୁ କାଠରେ ଅତି ସାମାନ୍ୟ ରୂପେ ନିର୍ମିତ ଓ ପରିମାଣ ଚିହ୍ନ ସ୍ଥଳରେ କାଳୀର ଦାଗଥିଲା । ଏହି ମାତ୍ର ଉପକରଣ ସମ୍ପନ୍ନ ହୋଇ । ସ୍ୱାବଲମ୍ବିତ ମତ ପ୍ରମାଣ ସିଦ୍ଧ କରିବା ନିମନ୍ତେ ସକଳ ଗବେଷଣା ଆବଶ୍ୟକ, କେତେ ବରଷ ତତ୍ ସମ୍ପାଦନ ବିଷୟରେ ମନୋନିବେଶ କଲେ । ପରିଶେଷେ ୧୫୩୦ ଖ୍ରୀଷ୍ଟାବ୍ଦରେ ଏକ ଗ୍ରନ୍ଥ ରଚନା କଲେ; ସେଥିରେ ଏହି ନୂତନ ପ୍ରଣାଳୀ ବିଶେଷ ରୂପେ ବିଖ୍ୟାତ ହେଲା ।

ଅନ୍ୟାନ୍ୟ ଲୋକମାନଙ୍କଠାରୁ ସମଧିକ ଜ୍ଞାନାଲୋକ ସମ୍ପନ୍ନ ବହୁଳ ବିଦ୍ୱାନ ଲୋକମାନେ ପୂର୍ବଠାରୁ କୋପର୍ନିକସର ମତ ଜ୍ଞାତ ଥିଲେ । ଏତେବେଳେ ସେମାନେ ସମୁଚିତ ସମାଦର ଓ ଶ୍ରଦ୍ଧା ପ୍ରଦର୍ଶନ ପୂର୍ବକ ତାହା ଗ୍ରାହ୍ୟ କଲେ । ସେମାନଙ୍କୁ ଛଡ଼ା ଆଉ ସକଳ ଲୋକେ ଓ ଧର୍ମୋପଦେଶକଗଣ ଅପେକ୍ଷାକୃତ ଅଜ୍ଞ ଓ କୁସଂସ୍କାରବଦ୍ଧ ଥିଲେ ; ସୁତରାଂ ସେ ବିଷୟରେ ସେମାନଙ୍କର ଶ୍ରଦ୍ଧା ଜନ୍ମିବାର ସମ୍ଭାବନା ନାହିଁ ।

ପୂର୍ବକାଳୀୟ ଲୋକମାନେ ବିଶ୍ୱର ସମ୍ବନ୍ଧରେ ପରମ୍ପରାଗତ କେତେକ ନିର୍ଦ୍ଧାରିତ ନିୟମର ଅନୁବର୍ତ୍ତୀ ହୋଇଚାଲନ୍ତି । ସୁତରାଂ ସେମାନେ ସ୍ୱୟଂ ତତ୍ତ୍ୱ ନିର୍ଣ୍ଣୟ

କରି ପାରନ୍ତି ନାହିଁ । ଏବଂ ଅନ୍ୟ ଲୋକେ ସୁସ୍ପଷ୍ଟରୂପେ ବୁଝାଇ ଦେଲେ ସୁଦ୍ଧା ତାହା ସ୍ୱୀକାର କରନ୍ତି ନାହିଁ । ସେ ସମୟର ଲୋକମାନଙ୍କର ଏହି ରୀତି ଥିଲା, ପୂର୍ବାଗ୍ରଣୀମାନେ ଯାହା ନିର୍ଦ୍ଦେଶ କରିଯାଇ ଅଛନ୍ତି, କୌଣସି ବିଷୟ ତାହାର ବିପରୀତ ବା ବିପରୀତ ପରି ଆଭାଷମାନ ହେଲେ ତାହା ଶୁଣିବାକୁ ଇଚ୍ଛା କରନ୍ତି ନାହିଁ । ଫଳତ ସେମାନେ କେବଳ ପ୍ରମାଣ ପ୍ରୟୋଗର ବିଧେୟ ଥିଲେ ତତ୍ତ୍ୱ ନିର୍ଣ୍ଣୟ ନିମନ୍ତେ ସ୍ୱୟଂ ଅନୁଧାନ ବା ବିବେଚନା କରନ୍ତି ନାହିଁ । ଏଥିରେ ଏହି ଲାଭ ହୋଇଥିଲା ଯେ ନିର୍ମଳ ମନୀଷା ସମ୍ପନ୍ନ ଲୋକମାନେ ଅଭିଜ୍ଞତା ବା ଅନୁସନ୍ଧାନ ଦ୍ୱାରା ଯେ ନୂଆ, ମତ ପ୍ରକାଶ କରନ୍ତି ତାହା ଚିରସେବିତ ମତର ବିସମ୍ବାଦୀ ବୋଲି ଅଜ୍ଞାନ ରୂପ ଅନ୍ଧକୂପରେ ନିକ୍ଷିପ୍ତ ହୁଅଇ । ଏହି ଏକ ସିଦ୍ଧାନ୍ତ ସେମାନଙ୍କ ବିଶ୍ୱାସ କ୍ଷେତ୍ରରେ ବଦ୍ଧମୂଳ ହୋଇଥିଲା ଯେ ପୃଥିବୀ ଅଚଳ ଓ ଅପରିଚ୍ଛିନ୍ନ ବିଶ୍ୱର କେନ୍ଦ୍ରଭୂତା ଏହି ମତ ପୂର୍ବକାଳର ସର୍ବତନ୍ତ୍ର ପଣ୍ଡିତମାନେ ପ୍ରାମାଣିକ ବୋଲି ଅଙ୍ଗୀକାର କରି ଯାଇଅଛନ୍ତି, ବହୁକାଳର ପ୍ରଚଳିତ ହୋଇ ଆସୁଅଛି ଏବଂ ପଦାର୍ଥ ସକଳ ସ୍ଥୂଳ ଦୃଷ୍ଟିରେ ଆପାତତଃ ଯେପରି ପ୍ରତୀୟମାନ ହୁଅଇ ତାହାର ସହିତ ଅବିରୁଦ୍ଧ, ବିଶେଷରେ ସେ ସମୟର ଲୋକମାନଙ୍କର ବୋଧଥିଲା ଏବଂ ବାଇବଲର କୌଣସି ୨ ସ୍ଥାନରେ ମଧ୍ୟ ଏହାର ପୋଷକତା ଅଛି । ଏହି ସକଳ ପର୍ଯ୍ୟାଲୋଚନା କରି କୋପର୍ନିକସ ସେହି ବହୁ ବରଷର ଆୟାସ ସମ୍ପାଦିତ ଗ୍ରନ୍ଥ ସହସା ପ୍ରଚାର କରି ପାରିଲେ ନାହିଁ ।

ପରିଶେଷରେ ଟିକମ ନାମକ ତାହାଙ୍କର ଏକ ବାନ୍ଧବ, ପକ୍ଷ[କ୍ଷେ]ପରେ ତଦୀୟ ଗ୍ରନ୍ଥର ମୂର୍ମ [ମର୍ମ] ସଙ୍କଳନ କରି, ୧୫୪୦ ସାଲରେ ଏକ କ୍ଷୁଦ୍ରପୁସ୍ତକ ମୁଦ୍ରିତ ଓ ପ୍ରଚାରିତ କଲେ, କିନ୍ତୁ ତହିଁରେ ଆପଣାର ନାମ ନିର୍ଦ୍ଦେଶ କଲେ ନାହିଁ । ଏଥିରେ କେହି ବିଦ୍ୱେଷ ପ୍ରକାଶ ନ କରିବାରୁ ସେହି ବ୍ୟକ୍ତି ଆପଣାର ନାମ ସହିତ ଉକ୍ତ ପୁସ୍ତକ ପୁନର୍ମୁଦ୍ରିତ କଲେ । ଦୁଇ ଥରରେ ସୁଦ୍ଧା "ଏହି ମତ କୋପର୍ନିକସର," ବୋଲି ସ୍ପଷ୍ଟ ଉଲ୍ଲେଖ ଥିଲା । ସେହି ସମୟରେ ରେନ ହୋଲଣ୍ଡ ନାମକ ଏକ ପଣ୍ଡିତ ଖଣ୍ଡେ ପୁସ୍ତକ ପ୍ରଚାର କଲେ । ତହିଁରେ ଏହି ନୂତନ ମତର ଭୂୟସୀ ପ୍ରଶଂସା ଲେଖାଥିଲା । ସର୍ବଦା ଏପରିଘଟନା ହୋଇଥାଏ କୌଣସି ଲବ୍ଧପ୍ରତିଷ୍ଠ ଭ୍ରାନ୍ତ-ପ୍ରବର୍ତ୍ତିକ ସହିତ ତୁଳନା କରି ଗଣନା କଲେ ତତ୍ତ୍ୱ ପ୍ରଦର୍ଶକର ଯଥେଷ୍ଟ ପ୍ରଶଂସା କରାଯାଏ । କୋପର୍ନିକସ ଆତ୍ମୀୟ ବର୍ଗର ପ୍ରବର୍ତ୍ତନା ପରତନ୍ତ୍ର ହୋଇ ଆପଣା ଗ୍ରନ୍ଥ ପ୍ରଚାର ପାଇଁ ସମ୍ମତ ହେଲେ । ତଦନୁସାରେ ନର ସ୍ୱର୍ଗବାସୀ ଥୋକାଏ ପଣ୍ଡିତର ଅଧ୍ୟକ୍ଷତାରେ ତନ୍ନଗରସ୍ଥ ଯନ୍ତ୍ରରେ ଗ୍ରନ୍ଥମୁଦ୍ରିତ ହେବାକୁ ଲାଗିଲା । ସେତେବେଳେ ସେ ଅତ୍ୟନ୍ତ ବୃଦ୍ଧ ହୋଇଥିଲେ; ଶବଦଶାରେ ତାହାଙ୍କର ଗ୍ରନ୍ଥ ପ୍ରଚାରିତ ଦେଖିବା

ତାହାଙ୍କ ଅଦୃଷ୍ଟରେ ଘଟିଲା ନାହିଁ । ଗ୍ରନ୍ଥ ମୁଦ୍ରିତ ହେବାମାତ୍ର ତାଙ୍କ ବନ୍ଧୁରେନିକସ୍ ଝଣ୍ଡେ ପୁସ୍ତକ ତାହାଙ୍କଠାକୁ ପଠାଇ ଦେଲେ । ମାତ୍ର ପୁସ୍ତକ ତାହାଙ୍କ ତନୁତ୍ୟାଗର କେତେକ ଦଣ୍ଡ ପୂର୍ବରେ ତାହାଙ୍କଠାରେ ପହୁଁଚିଥିଲା ମଣୀହର ୧୫୪୩ ସାଲ ମେ ମାସ ୨୪ ତାରିଖରେ ସେ କଳେବର ତ୍ୟାଗ କଲେ ।

ଏହିରୂପେ କୋପର୍ନିକସର ମତ ଭୂମଣ୍ଡଳରେ ପ୍ରଚାରିତ ହୋଇଲା । କିନ୍ତୁ ଗ୍ରନ୍ଥ କର୍ତ୍ତାର ମୃତ୍ୟୁ ହୋଇଥିଲା ବୋଲି ହେଉ କିମ୍ବା ସେପରି ପ୍ରଚାରିତ ଗ୍ରନ୍ଥ ସାଧାରଣ ଜ୍ଞାନର ସାଧ୍ୟ ନୁହେଁ ବୋଲି ହେଉ କିମ୍ବା ଅନ୍ୟ କୌଣସି ଗୁହ୍ୟ କାରଣରେ ହେଉ କୌଣସି ସମାଜ ବା ସମ୍ପ୍ରଦାୟର ଲୋକେ ବିଦ୍ୱେଷ ପ୍ରକାଶ କଲେ ନାହିଁ ।



# ଗାଲିଲିୟ

କୋପର୍ନିକସ ପରଲୋକ ଯାତ୍ରାର ୪୦ ବରଷ ପରେ ଇଯୁରୋପର ଅତି ପ୍ରଧାନ ଜ୍ୟୋତିର୍ବିଦ ଟାଇକ ବ୍ରାହ୍ମ କ୍ରମାଗତ ୩୦ ବରଷ ଜ୍ୟୋତିର୍ବିଦ୍ୟାର ଅନୁଶୀଳନ କରିଥିଲେ, ତଥାପି କୋପର୍ନିକସର ପ୍ରଦର୍ଶିତ ପ୍ରଣାଳୀ ଅବଲମ୍ବନ କଲେ ନାହିଁ, ଯାହା ହେଉ ଇଟାଲୀ ଦେଶୀୟ ଯେ ସୁପ୍ରସିଦ୍ଧ ପଣ୍ଡିତ ସେହି ମତ ଅବଲମ୍ବନ କରି ତାହାର ଯଥୋଚିତ ପୋଷକତା କଲେ ତାହାଙ୍କ ବିବରଣ ସଂକ୍ଷେପରେ ଲେଖାଯାଉ ଅଛି ।

ଇଟାଲୀର ଅନ୍ତଃପାତି ପିସା ନାମଧେୟ ନଗରରେ ମଶୀହର ୧୫୬୪ ସାଲରେ ଗାଲିଲିୟ ଜନ୍ମ ଗ୍ରହଣ କଲେ । ତାହାଙ୍କ ଜନକ ଟସ୍କାନ ଦେଶରେ ଜଣେ ପ୍ରଧାନ ଲୋକ ଥିଲେ; କିନ୍ତୁ ସେପରି ଧନବନ୍ତ ଥିଲେ ନାହିଁ । ସେ ଗାଲିଲିୟଙ୍କୁ ଚିକିତ୍ସା ବିଦ୍ୟା ଶିକ୍ଷା କରିବା ପାଇଁ, ତନ୍ନଗରର ବିଶ୍ୱବିଦ୍ୟାଳୟରେ ନିଯୋଗ କଲେ । ସେହି ସମୟରେ ଅରିଷ୍ଟଟଲର ଦର୍ଶନ ଶାସ୍ତ୍ର ନିତାନ୍ତ ଯୁକ୍ତି ବହିର୍ଭୂତ ବୋଲି ତାହାଙ୍କର ଦୃଢ଼ ପ୍ରତ୍ୟୟ ଜନ୍ମିଲା; ସୁତରାଂ ସେହି ଦିନଠାରୁ ସେ ତନ୍ମତର ଘୋରତର ପ୍ରତିପକ୍ଷ ହୋଇ ଉଠିଲେ । ଗଣିତ ଶାସ୍ତ୍ରରେ ବିଶିଷ୍ଟରୂପେ ପ୍ରତିପତ୍ତି ଲାଭ ହେବାରୁ ୧୫୮୯ ସାଲରେ ସେହି ବିଦ୍ୟାଳୟରେ ଉକ୍ତ ଶାସ୍ତ୍ରର ଅଧ୍ୟାପକ ହେଲେ । ତେତେବେଳେ ସେ ଏହି ଅଯଥାଭୂତ ଦର୍ଶନ ଶାସ୍ତ୍ରର ଅଯୌକ୍ତିକତା ସପ୍ରମାଣ କରି ପାରିବା ପାଇଁ ପ୍ରକୃତିର ନିୟମ ସକଳ ଦେଖାଇବାକୁ ଆରମ୍ଭ କଲେ । ଏକଦା ସମବେତ ବହୁ ସଂଖ୍ୟକ ଦର୍ଶକ ସମକ୍ଷରେ ସେ ସ୍ଥାନର ପ୍ରଧାନ ଦେବାଳୟ ଉପରି ଭାଗରେ ପରୀକ୍ଷା କରି ଦେଖାଇଲେ ଗୁରୁତ୍ୱ ପତନ ନିୟମକ

ନୁହଇ ★ ଏଥିରେ ଅଣ୍ଟିଷ୍ଟଲର ମତାବଲମ୍ବୀମାନେ ତାହାଙ୍କର ଏମନ୍ତ ବିପକ୍ଷ ହୋଇ ଉଠିଲେ ଯେ ଦୁଇ ବରଷ ପରେ ତାହାଙ୍କୁ ଅଧ୍ୟାପକର ପଦ ପରିତ୍ୟାଗ କରିବାକୁ ହେଲା ।

ଏହିରୂପେ ପିସା ନଗରଠାରୁ ଅପମାନିତ ହୋଇ ଗାଲିଲିଓ କିଛିଦିନ କର୍ମଶୂନ୍ୟ ହୋଇ କାଳଯାପନ କରିବାକୁ ଲାଗିଲେ କିନ୍ତୁ ଇଟାଲୀ ପ୍ରଦେଶାନ୍ତର୍ଗତ ଲୋକମାନେ, ତାହାଙ୍କର ବିଦ୍ୟା ବୁଦ୍ଧିର ଉତ୍କର୍ଷତା ଅନୁଭବ କରିବାକୁ ପାରି ୧୫୯୨ ସାଲରେ ତାହାଙ୍କୁ ପେଡୁଆର ବିଶ୍ୱବିଦ୍ୟାଳୟରେ ଗଣିତ ଅଧ୍ୟାପକ ପଦରେ ନିଯୁକ୍ତ କଲେ । ଏହି ସ୍ଥାନରେ ସେ ଅତି ସୁନ୍ଦର ରୂପେ ଉପଦେଶ ଦେବାକୁ ଲାଗିଲେ । ଇଉରୋପୀୟ ପଣ୍ଡିତମାନେ ସର୍ବଦା ଲାଟିନ ଭାଷାରେ ଉପଦେଶ ଦିଅନ୍ତି, କିନ୍ତୁ ଗାଲିଲିଓ ତାହା ପରିତ୍ୟାଗ କରି ଇଟାଲୀୟ ଭାଷାରେ ଆରମ୍ଭ କଲେ । ସେତେବେଳେ ଏହି ନୂତନ ମତ ଅବଲମ୍ବନ କରିବା ମଧ୍ୟ ଏକ ପ୍ରକାର ସାହସର କର୍ମ ବୋଲି ପରିଗଣିତ ହୋଇଥିଲା ।

ପେଡୁଆରେ ଅଠର ବରଷ ଅବସ୍ଥିତି କରି ସେ ପଦାର୍ଥ ବିଦ୍ୟା ସମ୍ବନ୍ଧୀୟ ଯେ ସକଳ ଅଭିନବ ନିୟମ, ଉଦ୍ଭାବନ କଲେ ତାହା ତତ୍କାଳ ପ୍ରଚଳିତ ମତର ନିତାନ୍ତ ବିପରୀତ । ତଥାପି ସେ ନିର୍ଭୟରେ ଶିଷ୍ୟମାନଙ୍କୁ ଆନୁଷଙ୍ଗିକ ସେହି ସକଳ ବିଷୟର ଶିକ୍ଷା ଦେଲେ ।

ଜେନସନ ନାମକ ଜଣେ ଓଲନ୍ଦାଜ ଏକ ଅଭିନବ ଯନ୍ତ୍ର ନିର୍ମାଣ କଲେ । ତଦ୍ଦ୍ୱାରା ଅବଲୋକନ କଲେ ଦୂରବର୍ତ୍ତୀ ପଦାର୍ଥ ନିକଟବର୍ତ୍ତୀ ବୋଧହୁଏ । ଗାଲିଲିଓ ସେହି ପ୍ରକାର ଯନ୍ତ୍ର ଉଦ୍ଭାବନ ବିଷୟରେ ପ୍ରସ୍ତୁତ ପ୍ରାୟ ହୋଇଥିଲେ, ଏତେବେଳେ

---

★ ମୂର୍ଖ ଲୋକମାନେ ବୋଧ କରନ୍ତି ପଦାର୍ଥର ଭାର ଅଛି ବୋଲି ଭୂମିରେ ପଡ଼େ, ଆଉ ଯେ ବସ୍ତୁ ଯେତେ ଭାର ସେ ବସ୍ତୁ ତେତେ ଶୀଘ୍ର ପଡ଼େ । ପୂର୍ବକାଳରେ ଅରିଷ୍ଟଟଲ ପ୍ରଭୃତି ଇଉରୋପର ଅତି ପ୍ରଧାନ ପଣ୍ଡିତମାନେ ଏହି ମତ ପ୍ରତିପନ୍ନ କରି ଯାଇଅଛନ୍ତି, ଏବଂ ଏତଦ୍ଦେଶୀୟ ନୈୟାୟିକମାନଙ୍କର ମଧ୍ୟ ଏହି ମତ ମାତ୍ର ଏକଥା ଭୁଲ, ପ୍ରକୃତିର ନିୟମାନୁଗତ ନୁହଇ । ପୃଥିବୀର ଆକର୍ଷଣ ଶକ୍ତି ଅଛି ସେହି ଶକ୍ତିଦ୍ୱାରା ଆକୃଷ୍ଟ ହୋଇ ବସ୍ତୁ ସକଳ ଭୂମିରେ ପଡ଼େ । ତେବେ ଯେ, ବସ୍ତୁ ଗୁରୁ ସେ ବସ୍ତୁ ଶୀଘ୍ର ଓ ଲଘୁ ବସ୍ତୁ ବିଳମ୍ବରେ ଯେ ପଡ଼େ, ସେ କେବଳ ବାୟୁର ପ୍ରତିବନ୍ଧକ ମାତ୍ର । ପରୀକ୍ଷା କରି ଦେଖାଯାଇ ଅଛି ନିର୍ବାତ ସ୍ଥାନରେ ଗୁରୁ ଓ ଲଘୁ ବସ୍ତୁ ଯୁଗପତ୍ ପରିତ୍ୟକ୍ତ ହେଲେ ଯୁଗପତ୍ ଭୂମିରେ ପଡ଼େ ।

(୧୬୦୯) ସାଲ ଶୁଣିବାମାତ୍ର ତାହା କି କି ଉପାଦାନରେ ନିର୍ମିତ ହୋଇଥିଲା ତାହା ବୁଝି ପାରିଲେ ଏବଂ ଧନେ ସୁଦ୍ଧା ବିଲମ୍ବ ନ କରି ତାହାଠାରୁ ଅନେକ ଅଂଶରେ ଉତ୍ତମ ତଥାବିଧ ଯନ୍ତ୍ର ନିର୍ମାଣ କଲେ । ଏହିରୂପେ ଦୂରବୀକ୍ଷଣର ସୃଷ୍ଟି ହେଲା । ଏହା ପଦାର୍ଥ ବିଦ୍ୟା-ସମ୍ବନ୍ଧୀୟ ଯାବତୀୟ ଯନ୍ତ୍ରଠାରୁ ଅଧିକ ଉପକାରକ ।

ଗାଲିଲିୟ ଏହି ଦୃଷ୍ଟି ପୋଷକ ନଳୀକାର ନୂତନ ଯନ୍ତ୍ର ନଭୋମଣ୍ଡଳରେ ପ୍ରୟୋଗ କରି ଦେଖିଲେ ଯେ ତାରକା ସମୂହ ତାର କାସ୍ତବକ ମାତ୍ର ଓ ଚନ୍ଦ୍ରମଣ୍ଡଳର ଉପରି ଭାଗ ଅତ୍ୟନ୍ତ ବନ୍ଧୁର; କୌଣସି କୌଣସି ସମୟରେ ସୂର୍ଯ୍ୟମଣ୍ଡଳ କଳଙ୍କିତ ଦେଖାଯାଏ; ବୃହସ୍ପତି ଚତୁଷ୍ଟୟ ପାର୍ଶ୍ୱପାର୍ଶ୍ୱକ ପରିବେଷ୍ଟିତ; ଶୁକ୍ର ଗ୍ରହର ଚନ୍ଦ୍ର ପରି ହ୍ରାସ ବୃଦ୍ଧି ଅଛି; ଶନି ଗ୍ରହର ଦୁଇପାର୍ଶ୍ୱରେ ପକ୍ଷାକାର କୌଣସି ପଦାର୍ଥ ଅଛି, ସେହି ପକ୍ଷ ବର୍ତ୍ତମାନ ଅଙ୍ଗୁରୀୟ ବୋଲି ସିଦ୍ଧାନ୍ତିତ ହୋଇଅଛି ।

ବୋଧ ହୁଏ କି ଗାଲିଲିୟ ଅନେକ କାଳରୁ ମନମଧ୍ୟରେ ବିଚାର କରିଥିଲେ ନଭୋମଣ୍ଡଳସ୍ଥ ବସ୍ତୁ ସକଳ ଯେପରି ଦେଖାଯାଏ ବାସ୍ତବିକ ସେପରି ନୁହେଁ, କିନ୍ତୁ କୌଣସି ସମୟରେ ଯେ ଏହି ରହସ୍ୟର ମର୍ମଭେଦ କରି ପାରିବେ ତାହାଙ୍କର ଏପରି ଆଶା ଥିଲା ନାହିଁ । ଏତେବେଳେ ଏହି ସକଳ ବିଷୟ ଗାଲିଲିୟ ପ୍ରକାଶ କରି ତାହାଙ୍କର ଅନ୍ତଃକରଣ ଯେ କି ପର୍ଯ୍ୟନ୍ତ ଅଦ୍ଭୁତପୂର୍ବ ଚମତ୍କାର ଓ ଆନନ୍ଦରେ ପୂର୍ଣ୍ଣ ହେଲା, ତାହା କୌଣସି ପ୍ରକାରେ ଅନୁଭବ କରିଯାଇପାରେ ନାହିଁ ।

ମଣୀହର ୧୬୧୧ ସାଲରେ, ଯେତେବେଳେ ସେ ଏହି ସକଳ ଗବେଷଣାରେ ପ୍ରବୃତ୍ତ ହେଲେ, ତେତେବେଳେ ଟସ୍କାନର ଅଧୀଶ୍ୱରର ଅନୁରୋଧ-ପରତନ୍ତ୍ର ହୋଇ ପିସା ପ୍ରତ୍ୟାଗମନ ପୂର୍ବକ ସମଧିକ ଦରମାହାରେ ସେଠାରେ ଗଣିତାଧ୍ୟାପକର ପଦ ପୁନର୍ବାର ଗ୍ରହଣ କଲେ । ସୁତରାଂ ତାହାଙ୍କର ଉଦ୍ଭାବିତ ବିଷୟ ସକଳ ପ୍ରଥମେ ସେହି ନଗରରେ ପରିଗଣିତ ହୁଏ । କୋପର୍ନିକସ କେବଳ ଦୈବଗତ୍ୟା ଯେ ସକଳ ନିଗ୍ରହ ଅତିକ୍ରମ କରି ଯାଇଥିଲେ ଏତେବେଳେ ଗାଲିଲିୟଙ୍କୁ ସେହି ସକଳ ଭୋଗ କରିବାକୁ ହେଲା । ସେହି ସମୟରେ ସେ ଖଣ୍ଡେ ଗ୍ରନ୍ଥ ପ୍ରଚାର କଲେ; ସେଥିରେ ଏହି ପରି ଲେଖାଥିଲା "ଆମ୍ଭେ ଯାହା ଯାହା ଉଦ୍ଭାବନ କରିଅଛୁଁ ସେଥିରେ କୋପର୍ନିକସର ଅବଲମ୍ବିତ ଯଥାର୍ଥ ପ୍ରଣାଳୀ ସପ୍ରମାଣ କରା ହୋଇଅଛି ।" ଏଥିରେ ଏହିଫଳ ଘଟିଲା ଯେ ଯାଜକମାନେ ତାହାଙ୍କ ନାମରେ ଧର୍ମ ବିପ୍ଳାବକ ବୋଲି ଅଭିଯୋଗ ଉପସ୍ଥିତ କରିବାରୁ ୧୬୧୫ ସାଲରେ ତାହାଙ୍କୁ ରୋମନଗରସ୍ଥ ଧର୍ମବିଚାର

* ସମ୍ମୁଖରେ ଉପସ୍ଥିତ ହେବାକୁ ହେଲା । ଅଧ୍ୟକ୍ଷମାନେ ତାହାଙ୍କୁ ଏହି ପ୍ରତିଜ୍ଞା ଶୃଙ୍ଖଳରେ ବନ୍ଧ କଲେ, ଆଉ ଆପ୍ତେ ଏପ୍ରକାର ସାଂଘାତିକ ମତାନୁଯାୟୀ କଦାଚ ହେବା ନାହିଁ, ଏହା ମଧ୍ୟ ନିର୍ଦ୍ଦିଷ୍ଟ ଅଛି, କିନ୍ତୁ ସତ୍ୟାସତ୍ୟ ନିଷ୍ପତ୍ତି ନାହିଁ, ସଭାଧ୍ୟକ୍ଷମାନେ ଏହି ଉପଲକ୍ଷରେ ତାହାଙ୍କୁ ପାଞ୍ଚମାସ କାରାରୁଦ୍ଧ କରିଥିଲେ । ଟସ୍କାନିର ଅଧୀଶ୍ୱର ଏ ବିଷୟରେ ହସ୍ତାର୍ପଣ କରି ନ ଥିଲେ, ତାହାଙ୍କୁ ଆହୁରି ଗୁରୁତର ଦଣ୍ଡଭୋଗ କରିବାକୁ ହୋଇ ଥାଆନ୍ତା ।

ଗାଲିଲିଓ ଧର୍ମସଭାରେ ଯେ ପ୍ରକାର ପ୍ରତିଜ୍ଞା କରିଥିଲେ ତଦନୁସାରେ କେତେ ବରଷ ପର୍ଯ୍ୟନ୍ତେ ନିବୃତ୍ତ ହେଲେ; କିନ୍ତୁ ଜ୍ୟୋତିର୍ବିଦ୍ୟାର ଯେ ଯଥାର୍ଥ ମତ ଅବଲମ୍ବନ କରିଥିଲେ ତାହା ଅନୁଶୀଳନରେ ବିରତ ହେଲେ ନାହିଁ । ପରିଶେଷ କୋପର୍ନିକସର ପ୍ରଦର୍ଶିତ ପ୍ରଣାଳୀର ବିସ୍ତାରିତ ବିବରଣ ଭୂମଣ୍ଡଳରେ ପ୍ରଚୁର କରିବା ପାଇଁ ନିତାନ୍ତ ଉତ୍ସୁକ ହେଲେ କିନ୍ତୁ କୁସଂସ୍କାରବିଷ୍ଟ ବିପକ୍ଷ ବର୍ଗର ବିଦ୍ୱେଷ ଭୟରେ ସ୍ପଷ୍ଟ ରୂପେ ଆପଣାର ମତ ବ୍ୟକ୍ତ ନ କରି କୌଶଳ ପୂର୍ବକ ତିନିଜଣର କଥୋପକଥନାତ୍ମକ ଖଣ୍ଡେ ଗ୍ରନ୍ଥ ରଚନା କଲେ । ସେଥିରେ ପ୍ରଥମ ବ୍ୟକ୍ତି କୋପର୍ନିକସର ମତ ରକ୍ଷା କରି ଅଛି; ଦ୍ୱିତୀୟ ଟଲେମି ଓ ଅରିଷ୍ଟଟାଲର; ତୃତୀୟ ବ୍ୟକ୍ତି ଦୁଇ ପକ୍ଷର ପ୍ରଦର୍ଶିତ ଯୁକ୍ତି ଓ ତର୍କର ଏପ୍ରକାର ବଳାବଳ ବିଚାର କରିଅଛି ଯେ ଉପସ୍ଥିତ ବିଷୟ ଆପାତତଃ ଅନିର୍ଣ୍ଣିତସ୍ୱାତ୍ମକ ବୋଧ ହୁଏ, କିନ୍ତୁ ଅଭିନିବେଶ ପୂର୍ବକ ବିଚାର କରି ଦେଖିଲେ, କୋପର୍ନିକସ ମତର ବିଶୁଦ୍ଧତା ପ୍ରକାଶ ପାଉଅଛି ।

ତେତେବେଳେ ଗାଲିଲିଓର ବୟଃକ୍ରମ ଛଅସ୍ତରି ବରଷ ତଥାପି ସେ ନିଜେ ସେହି ଗ୍ରନ୍ଥ ଘେନି ୧୬୩୦ ସାଲରେ, ରୋମ ନଗରକୁ ଗମନ କଲେ । ସେଠାରେ ଧର୍ମାଧ୍ୟକ୍ଷମାନଙ୍କର ଅସମ୍ଭାବନୀୟ ଅନୁଗ୍ରହୋଦୟ ଯୋଗୁଁ କାରେ ଗ୍ରନ୍ଥ ମୁଦ୍ରିତ କରିବାକୁ ଅନୁମତି ପାଇଲେ । କିନ୍ତୁ ଉକ୍ତ ପୁସ୍ତକ ରୋମ ଓ ଫ୍ଲୋରେନ୍ସ ନଗରରେ ପ୍ରଚାରିତ ହେବାମାତ୍ରେ ଅରିଷ୍ଟଟାଲର ମତାବଲମ୍ବୀମାନେ ଏକାବେଳେ ଗ୍ରନ୍ଥକର୍ତ୍ତାଙ୍କୁ ଆକ୍ରମଣ କଲେ । ତନ୍ମଧ୍ୟରେ ପିସା ଦର୍ଶନ ଶାସ୍ତ୍ରର ଅଧ୍ୟାପକ ସବୁଠାରୁ ଅଧିକ

---

* ଧର୍ମବିଦ୍ୱେଷୀ ନାସ୍ତିକମାନଙ୍କ ପରୀକ୍ଷା ଓ ଦଣ୍ଡ ବିଧାନାର୍ଥକ ସଭା । ଇହା ମଣୀହର ୧୨୦୦ ସାଲରେ ସ୍ଥାପିତ ହୁଏ । ଇହା ସ୍ଥାପନ କରିବାର ଉଦ୍ଦେଶ୍ୟ ଏହି ଯେ, ଯେମାନେ ବାଇବଲର ବିରୁଦ୍ଧମତ ଅବଲମ୍ବନ ବା ପ୍ରଚାର କରିବେ ସେମାନେ ଏହି ସଭାରେ ପରୀକ୍ଷିତ ହୋଇ ଦଣ୍ଡ ପାଇବେ ।

ବିପକ୍ଷତାଚରଣ କଲେ । ସମସ୍ତ କାର୍ଡିନାଲ୍ * ମଙ୍କ † ଓ ଗଣିତଜ୍ଞ ମାନଙ୍କ ଉପରେ ଗାଲିଲିଓଙ୍କ ଗ୍ରନ୍ଥ ପରୀକ୍ଷା କରିବାର ଭାର ଅର୍ପିତ ହେଲା । ସେମାନେ ଅସାଧାରଣ ଧୈର୍ଯ୍ୟରେ ସେହି ଗ୍ରନ୍ଥକୁ ଘୋରତର ଧର୍ମ ବିପ୍ଲାବକ ବୋଲି ସ୍ଥିର କରି ତାହାଙ୍କୁ ରୋମ ନଗରସ୍ଥ ଧର୍ମସଭା ଆଗରେ ଉପସ୍ଥିତ ହେବା ପାଇଁ ଆଜ୍ଞା ଦେଲେ । ଗାଲିଲିଓ ସେତେବେଳେ ବୃଦ୍ଧ ହୋଇଥିଲେ ଏବଂ ତାହାଙ୍କର ପ୍ରତିପୋଷକ ବନ୍ଧୁ ଦ୍ୱିତୀୟ କସ୍ମୋ ପରଲୋକ ଯାତ୍ରା କରିଥିବାରୁ ସେ ନିତାନ୍ତ ନିଃସହାୟ ହୋଇ ଥିଲେ । ଅତଏବ ଏହି ଆକସ୍ମିକ ବିପତ୍ତିପାତ ତାହାଙ୍କ ପକ୍ଷରେ ଅତ୍ୟନ୍ତ ଭୟଜନକ ହୋଇ ଉଠିଲା । ବିପକ୍ଷମାନେ ଯତ୍ପରୋନାସ୍ତି ଉତ୍ପୀଡ଼ନ କରିବାରୁ ୧୬୩୩ ସାଲେ ଶୀତକାଳରେ ତାହାଙ୍କୁ ରୋମ ନଗରକୁ ଗମନ କରିବାକୁ ହେଲା । ସେଠାରେ ଉପସ୍ଥିତ ହେବାମାତ୍ରେ, ଧର୍ମସଭାର ଅଧ୍ୟକ୍ଷମାନେ ତାହାଙ୍କୁ କାରାଗାରରେ ନିକ୍ଷିପ୍ତ କଲେ । କେତେକ ମାସ ସେଠାରେ ରହିଲା ବାଦ ବିଚାରପତିମାନଙ୍କ ସମ୍ମୁଖକୁ ଅଣାଗଲାରୁ ସେମାନେ ଏହି ଦଣ୍ଡବିଧାନ କରି, କହିଲେ ତୁମ୍ଭଙ୍କୁ ଆମ୍ଭମାନଙ୍କ ଆଗରେ ଆଣ୍ଠୁ ପାତି ଓ ବାଇବଲ ସ୍ପର୍ଶ କରି କହିବାକୁ ହେବ, ଯେ ଆମ୍ଭେ ପୃଥିବୀର ଗତି ପ୍ରଭୃତି ଯାହା ପ୍ରତିପନ୍ନ କରିଅଛୁଁ ସେ ସକଳ ଅସ୍ୱର୍ଗ୍ୟ, ଅଶ୍ରଦ୍ଧେୟ ଧର୍ମ ବିଦ୍ୱିଷ୍ଟ, ଭ୍ରାନ୍ତିମୂଳକ ।" ଗାଲିଲିଓ ସେହି ସମୟରେ ମନର ଦୃଢ଼ତା ରକ୍ଷା କରିବାକୁ ନ ପାରି ଯଥୋକ୍ତ ପ୍ରକାରେ ପୂର୍ବ ନିର୍ଦ୍ଦିଷ୍ଟ ପ୍ରତିଜ୍ଞା ବାକ୍ୟ ଉଚ୍ଚାରଣ କଲେ । କିନ୍ତୁ ଠିଆ ହେବା ମାତ୍ର ଆନ୍ତରିକ ଦୁଃଖ ପ୍ରତ୍ୟୟର ବିପରୀତ କର୍ମ କଲି ଭାବି ମନୋ-ମଧ୍ୟରେ ଘୃଣା ଓ ରୋଷ ସହକୃତ ଯତ୍ପରୋନାସ୍ତି ଅନୁତାପ ଉପସ୍ଥିତ ହେବାରୁ ପୃଥିବୀରେ ପଦାଘାତ କରି ଉଚ୍ଚୈସ୍ୱରରେ କହିଲେ, ଏହା ଏତେବେଳେ ମଧ୍ୟ ଚଳୁଅଛି । ବିଚାରକର୍ତ୍ତାମାନେ ଗାଲିଲିଓଙ୍କର ଦାମ୍ଭିକ୍ୟ ବୁଦ୍ଧିର ପୁନଃ ସଞ୍ଚାର ଦେଖି ଏହି ଗୁରୁତର ଦଣ୍ଡବିଧାନ କଲେ, ତୁମ୍ଭଙ୍କୁ ଯାବଜ୍ଜୀବନ କାରାଗାରରେ ରହିବାକୁ ହେବ ଏବଂ ତିନି ବରଷ ପର୍ଯ୍ୟନ୍ତେ ପ୍ରତି ସପ୍ତାହରେ ଅନୁତାପସୂଚକ ସପ୍ତ ସ୍ତୁତି ପାଠ କରିବାକୁ ହେବ ।

---

* ରୋମାନକାଥଲିକ ସମ୍ପ୍ରଦାୟର ସର୍ବ ପ୍ରଧାନଙ୍କୁ ପୋପ କୁହାଯାଏ । ତନ୍ନିମ୍ନ ପଦସ୍ଥ ଲୋକମାନଙ୍କର ପଦବୀ କାର୍ଡିନାଲ । ଏମାନେ ପୋପର ମନ୍ତ୍ରୀସ୍ୱରୂପ ।

† ଖ୍ରୀଷ୍ଟୀୟ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଯେମାନେ ସାଂସାରିକ ବିଷୟରୁ ବିରତ ହୋଇ ଧର୍ମ କର୍ମରେ ଏକାନ୍ତ ରତ ହୁଅନ୍ତି ସେମାନଙ୍କୁ ମଙ୍କ କୁହାଯାଏ । ମଙ୍କମାନେ ସର୍ବଦା ମଠରେ ବାସ କରନ୍ତି; କେହି ଭାରତବର୍ଷୀୟ ମୁନିଋଷିମାନଙ୍କ ପରି ଅରଣ୍ୟରେ ବାସ କରନ୍ତି ।

ତାହାଙ୍କର ଗ୍ରନ୍ଥ ଏକାବେଳକେ ପ୍ରତିଷିଦ୍ଧ ଓ ତାହାଙ୍କର ମତ ଏକାନ୍ତ ଅଶ୍ରଦ୍ଧିତ ହେଲା । ଏହି ରୂପେ ଗାଲିଲିଓ ପ୍ରତି କାରାବାସ ଦେଶ ହେଲେ ମଧ୍ୟ, କୌଣସି ୨ ବିଚାରପତି ବିବେଚନା କଲେ ସେ ଯେପରି ବୃଦ୍ଧ ହୋଇ ଅଛନ୍ତି ତହିଁରେ କୌଣସି ରୂପେ ଏପରି ଗୁରୁତର ଦଣ୍ଡ ସହି ପାରିବେ ନାହିଁ । ଅତଏବ ଅନୁକମ୍ପା ପ୍ରଦର୍ଶନ ପୂର୍ବକ ତାହାଙ୍କୁ ନିର୍ବାସିତ କରି ଫୋରେନ୍ସ ସନ୍ନିହିତ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ତାହାଙ୍କୁ ବାସ କରିବାପାଇଁ ଅନୁମତି ଦେଲେ । ସେ କେତେକ ବର୍ଷ ସେଠାରେ ରହି ପଦାର୍ଥବିଦ୍ୟା ଅନୁଶୀଳନଦ୍ୱାରା କାଳହରଣ କଲେ ।

ଗାଲିଲିଓ ତେତେବେଳେ ନେତ୍ର ରୋଗରେ ଅଭିଭୂତ ହୋଇଥିଲେ । ଏକ ନୟନ ଏକାବେଳକେ ନଷ୍ଟ ହୋଇଗଲା, ଦ୍ୱିତୀୟ ମଧ୍ୟ ସେପରି ସତେଜ ଥିଲା ନାହିଁ । ତେବେହେଁ; ୧୬୩୭ ସାଲରେ ଚନ୍ଦ୍ରର ତୁଲାମାନ ପ୍ରକାଶ କଲେ । ଶେଷ ଦଶାରେ ସେ ଅନ୍ଧତ୍ୱ, ବଧିରତ୍ୱ, ନିଦ୍ରାର ଅଭାବ, ଓ ସର୍ବାଙ୍ଗ ବ୍ୟାପିନୀ ପୀଡ଼ାରେ ଅତ୍ୟନ୍ତ ଅଭିଭୂତ ଓ ବିକଳ ହୋଇଥିଲେ । ୧୬୩୮ ସାଲରେ ସ୍ୱୟଂ ଲେଖି ଯାଇ ଅଛନ୍ତି "ଆମ୍ଭେ ଅନ୍ଧ ଦଶାରେ ଦେଖିଲ ବିଶ୍ୱରଚନା ସଂକ୍ରାନ୍ତ ଏକ ତତ୍ତ୍ୱ ଅନୁଧ୍ୟାନ କରୁଁ, ଆଜିବେଲେ ଆ ୬ ବର୍ଷସ୍ଥ. ମାନ ଯେତେ ଯତ୍ନ କରୁ ଅଛୁଁ କୌଣସି ପ୍ରକାରେ ଚଞ୍ଚଳଚିତ୍ତକୁ ସ୍ଥିର କରିପାରୁ ନାହୁଁ । ଏହି ସାର୍ବକ୍ଷଣିକ ଚିନ୍ତାବ୍ୟାସଙ୍ଗ ଦ୍ୱାରା ଆମ୍ଭର ନିଦ୍ରା ଏକାବେଳକେ ଉଚ୍ଛେଦ ହୋଇଅଛି । ଏହି ଅବସ୍ଥାରେ କ୍ରମଶଃ କ୍ଷୟକାଶ ରୋଗଦ୍ୱାରା ଆକ୍ରାନ୍ତ ହୋଇ ଗାଲିଲିଓ ଅଠସ୍ତରି ବର୍ଷ ବୟଃକ୍ରମ କାଳରେ, ୧୬୪୨ ସାଲ ଜାନୁଆରି ମାସରେ ତନୁତ୍ୟାଗ କଲେ । ତାହାଙ୍କ କଳେବର ଫ୍ଲୋରେନ୍ସ ନଗରର ଏକ ଦେବାଳୟରେ ସମାହିତ ହୋଇଲା । ଅନନ୍ତର ତାହାଙ୍କୁ ଚିରସ୍ମରଣୀୟ କରିବା ଉଚିତ ଜ୍ଞାନ କରି ସେ ସ୍ଥାନର ଲୋକମାନେ ୧୭୩୬ ସାଲରେ ସେଠାରେ ଏକ କୀର୍ତ୍ତିସ୍ତମ୍ଭ ନିର୍ମାଣ କଲେ ।



# ସର୍ ଉଇଲିୟମ ହର୍ଶେଲ

କୋପର୍ନିକସର ସମୟ ଠାରୁ ଟାଇକୋ, ବେକ୍ନ, କେପ୍ଲର, ନିଉଟନ, ହେଲଡ଼ି ଲଇଲ, ଲେଲଣ୍ଡ ଓ ଅନ୍ୟାନ୍ୟ ଜ୍ୟୋତିର୍ବିଦବର୍ଗର ଯତ୍ନ ଓ ପରିଶ୍ରମଦ୍ୱାରା ଜ୍ୟୋତିର୍ବିଦ୍ୟାର କ୍ରମେ ୨ ଉନ୍ନତି ହୋଇ ଆସୁଥିଲା । ପରେ ଯେ ଚିରସ୍ମରଣୀୟ ମହାନୁଭବର ଆବିଷ୍କ୍ରିୟାଦ୍ୱାରା ଉକ୍ତ ବିଦ୍ୟାର ଏକାବେଳେ ଭୂୟସୀ ଶ୍ରୀବୃଦ୍ଧି ହୁଏ; ବର୍ତ୍ତମାନ ତଦୀୟ ଜୀବନବୃତ୍ତ ଲେଖିବାକୁ ପ୍ରବୃତ୍ତ ହେଲୁଁ ।

ଉଇଲିୟମ ହର୍ଶେଲ, ୧୭୩୮ ଖ୍ରୀଷ୍ଟାବ୍ଦ ନବେମ୍ବର ମାସ ୧୫ ତାରିଖ ହାନୋବରରେ ଜନ୍ମ ଗ୍ରହଣ କଲେ । ତାହାଙ୍କର ଚାରି ସହୋଦର, ତନ୍ମଧ୍ୟରେ ସେ ଦ୍ୱିତୀୟ ଥିଲେ । ତାହାଙ୍କର ପିତା ତୌର୍ଯ୍ୟଜୀବ ବ୍ୟବସାୟଦ୍ୱାରା ଜୀବିକା ନିର୍ବାହ କରନ୍ତି । ସୁତରାଂ ତାହାଙ୍କର ଚାରି ସହୋଦର ପିତାର ଅବଲମ୍ବିତ ବ୍ୟବସାୟର ଉତ୍ତରାଧିକାରୀ ହେବାପାଇଁ କେବଳ ତାହା ଶିକ୍ଷାକଲେ । ମାତ୍ର ହର୍ଶେଲ ପିଲାକାଳରେ ଅତ୍ୟନ୍ତ ବିଦ୍ୟାନୁରାଗୀ ଥିବାରୁ ତାହାଙ୍କର ପିତା ତାହାଙ୍କର ବିଦ୍ୟାଶିକ୍ଷାପାଇଁ ଏକ ଶିକ୍ଷକ ନିଯୁକ୍ତ କଲେ । ହର୍ଶେଲ ଶିକ୍ଷକ ନିକଟରେ ନ୍ୟାୟ, ନୀତି ଏବଂ ମନୋବିଜ୍ଞାନ ବିଷୟକ ପ୍ରଥମ ପାଠ୍ୟ ଗ୍ରନ୍ଥ ସକଳ ପାଠ କରି ଏହି ତିନି ଦୁରୂହ ବିଦ୍ୟାରେ ଏକ ପ୍ରକାର ବ୍ୟୁତ୍ପନ୍ନ ହୋଇ ଉଠିଲେ ।

ପିତା ମାତାର ଅସଙ୍ଗତି ଓ ଆଉ ୨ କେତେକ ପ୍ରତିବନ୍ଧକ ପ୍ରୟୁକ୍ତ ଶୀଘ୍ର ତାହାଙ୍କର ବିଦ୍ୟାନୁଶୀଳନରେ ବ୍ୟାଘାତ ଜନ୍ମିଲା । ତାହାବାଦ ଚତୁର୍ଦ୍ଦଶ ବୟସ ସମୟରେ ସେ ସୈନିକ ଦଳସଂକ୍ରାନ୍ତ ବାଦ୍ୟକର ସମ୍ପ୍ରଦାୟରେ ନିଯୁକ୍ତ ହେଲେ । ଏବଂ ୧୭୫୭ ବା ୧୭୫୯ ଖ୍ରୀଷ୍ଟାବ୍ଦରେ ସେ ସେହି ସୈନିକ ଦଳ ସହିତ ଇଂଲଣ୍ଡ ଯାତ୍ରା କଲେ ; ତାହାଙ୍କ ପିତା ମଧ୍ୟ ତାହାଙ୍କ ସହିତ ଇଂଲଣ୍ଡକୁ ଯାଇଥିଲେ; ପରେ କେତେକ ମାସ ଅତୀତ ହେଲେ ସେ ସ୍ୱଦେଶକୁ ଫେରି ଆସିଲେ । ମାତ୍ର ହର୍ଶେଲ, ଇଂଲଣ୍ଡରେ ନିଜ ଭାଗ୍ୟ ପରୀକ୍ଷା କରି ଦେଖିବା ନି[ମ]ନ୍ତେ ପିତାର ଅନୁମତି ଗ୍ରହଣ କରି ସେହି ସ୍ଥାନରେ ଅବସ୍ଥିତି କଲେ । ଏହିପରି ଅନେକାନେକ ଧୀସମ୍ପନ୍ନ ବୈଦେଶିକମାନେ ସ୍ୱଦେଶ ପରିତ୍ୟାଗ ପୂର୍ବକ ଇଂଲଣ୍ଡରେ ବାସ୍ତବ୍ୟ କରି ରହନ୍ତି ।

ହର୍ଶେଲ କେଉଁ ସମୟରେ ଓ କି କାରଣରେ ଉକ୍ତ ସୈନିକ ଦଳ ସାମ୍ପ୍ରଦାୟିକ ପଦ ପରିତ୍ୟାଗ କଲେ ତାହା ଆମ୍ଭେମାନେ ଜ୍ଞାତ ନହୁଁ । ମାତ୍ର ତାହାଙ୍କୁ ଯେ ଦୁଃସହ କ୍ଳେଶରେ କାଳଯାପନ କରିବାକୁ ଏବଂ ଇଂରାଜୀ ଭାଷାରେ ବିଶିଷ୍ଟ ରୂପ ଜ୍ଞାନ ନ ଥିବାରୁ ଅତ୍ୟନ୍ତ ବିରକ୍ତ ହେବାକୁ ହୋଇଥିଲା ତାହାର ସନ୍ଦେହ ନାହିଁ । ପରିଶେଷରେ ଭାଗ୍ୟ କ୍ରମେ ଅରଲଅଫଡାରଲିଂଟନର ଅନୁଗ୍ରହୋଦୟ ହେବାରୁ ସେ ତାହାଙ୍କୁ ଏକ ସୈନିକ ବାଦ୍ୟକର ସମ୍ପ୍ରଦାୟରେ ଅଧ୍ୟକ୍ଷତା ଏବଂ ଉପଦେଶକତା ପଦରେ ନିଯୁକ୍ତ କଲେ । ପରେ ଏହି କର୍ମ ସମାଧାନ କରି ଇୟର୍କସରେ ଡ୍ରମ୍ମାବୃମ୍ପି ପଦରେ ନିଯୁକ୍ତ ହୋଇ କେତେକ ବରଷ ଅତିବାହନ କଲେ । ସେ ପ୍ରଧାନ ୨ ନଗରରେ ଶିଷ୍ୟମାନଙ୍କୁ ଉପଦେଶ ଦିଅନ୍ତି, ଏବଂ ଦେବାଳୟ ସମ୍ପର୍କୀୟ ତୂର୍ଯ୍ୟାଜୀବ ସମ୍ପ୍ରଦାୟ-ଅଧ୍ୟକ୍ଷ ପ୍ରତିନିଧି ହୋଇ ତଦୀୟ କାର୍ଯ୍ୟ ନିର୍ବାହ କରନ୍ତି । ଏହି କର୍ମରେ ଜର୍ମନ ଜାତୀୟ ଲୋକମାନେ ବିଶେଷ ନିପୁଣ; କାରଣ ସେମାନେ ତୂର୍ଯ୍ୟବିଦ୍ୟାରେ ଅତ୍ୟନ୍ତ ଅନୁରକ୍ତ ।

ହର୍ଶେଲ ଏବମ୍ବିଧ ଅନିଚ୍ଛିତ ବ୍ୟବସାୟ ଅବଲମ୍ବନ କରି ଅନ୍ୟ ଚିନ୍ତାରେ ଏକାନ୍ତ ବ୍ୟସ୍ତ ହୋଇ ମଧ୍ୟ ଆଉ ୨ ଚିନ୍ତା ଏକାବେଳେ ପରିତ୍ୟାଗ କରି ନାହାନ୍ତି । ବିଷୟ କର୍ମରୁ ଅବସର ପାଇଲେ ସେ ଏକଚିତ୍ତ ହୋଇ, ଆଗ୍ରହାତିଶୟ ସହିତ ଇଂରାଜୀ ଆଉ ଲାଟିନଭାଷା ଅନୁଶୀଳନ ଏବଂ ବିନା ସହାୟତାରେ ଲାଟିନ ଓ ଗ୍ରୀକ ଭାଷା ଅଭ୍ୟାସ କରନ୍ତି । ତେତେବେଳେ ସେ ଏହି ମୁଖ୍ୟ ଅଭିପ୍ରାୟରେ ଉକ୍ତ ସମସ୍ତ ବିଦ୍ୟା ଅଧ୍ୟୟନ କରୁଥିଲେ ଯେ ଏହା ନିଜ ବ୍ୟବସାୟିକ ବିଦ୍ୟାର ଆଲୋଚନା ବିଷୟରେ ବିଶେଷ ଉପଯୋଗିନୀ ହେବ; ପରେ ସେହି ଉଦ୍ଦେଶରେ ଡାକ୍ତର ରବର୍ଟ ସ୍ମିଥ ରଚିତ ତୂର୍ଯ୍ୟବିଷୟକ ଗ୍ରନ୍ଥ ପାଠ କରିଥିଲେ ସନ୍ଦେହ ନାହିଁ । ତତ୍କାଳେ ଇଂରାଜୀ ଭାଷାରେ ତୂର୍ଯ୍ୟବିଦ୍ୟା ବିଷୟକ ଯେତେ ଗ୍ରନ୍ଥ ପ୍ରଚଳିତ ଥିଲା ଏହା ତାହା ମଧ୍ୟରେ ଏକ ଉତ୍କୃଷ୍ଟ ଗ୍ରନ୍ଥ । ମାତ୍ର ଏହି ପୁସ୍ତକ ଅନୁଶୀଳନ, ଅନତିବିଲମ୍ବରେ ତାହାଙ୍କ ବର୍ତ୍ତମାନ ଅବଲମ୍ବିତ ବ୍ୟବସାୟ ପରିତ୍ୟାଗର ଏବଂ ବ୍ୟବସାୟାନ୍ତରାବଲମ୍ବନର କାରଣ ହୋଇ ଉଠିଲା । ସେ ଅତିଶୀଘ୍ର ବୁଝି ପାରିଲେ ଗଣିତ ବିଦ୍ୟାରେ ବ୍ୟୁତ୍ପନ୍ନ ନହେଲେ ଡାକ୍ତର ସ୍ମିଥ ଗ୍ରନ୍ଥ ଅନୁଶୀଳନରେ ବିଶେଷ ଉପକାର ପ୍ରଦର୍ଶିବ ନାହିଁ । ଅତଏବ ସ୍ୱଭାବସିଦ୍ଧ ସ୍ୱକୀୟ ଅନୁରାଗ ଓ ଅଧ୍ୟବସାୟ ସହିତ ଏହି ନୂତନ ବିଦ୍ୟା ଅନୁଶୀଳନରେ ନିବିଷ୍ଟମନା ହେଲେ । ଏବଂ ଅଳ୍ପଦିନ ମଧ୍ୟରେ ତହିଁରେ ଏମନ୍ତ ଆସକ୍ତ ହୋଇ ଉଠିଲେ ଯେ ଅବସର ପାଇଲେ ଅନ୍ୟାନ୍ୟ ଯେ ସକଳ ବିଷୟର ଆଲୋଚନା କରନ୍ତି ସେହି ସକଳ ଏହି ଅନୁରୋଧରେ ପରିତ୍ୟକ୍ତ ହେଲା ।

ଏଥି ମଧ୍ୟରେ ହର୍ଶେଲ, ଦେଟସ ନାମକ ଏକ ଲୋକ ନିକଟରେ ବଂଶୀଷ୍ଟରୂପେ ପରିଚିତ ହୋଇଥିଲେ, ଏତେବେଳେ ତାହାଙ୍କର ପ୍ରଯତ୍ନ ଓ ଆନୁକୂଲ୍ୟରେ ମଶୀହର ୧୭୬୫ ସାଲେ ହାଲିଫାକର ଦେବାଳୟେ ତୂର୍ଯ୍ୟାଜୀବ ପଦରେ ନିଯୁକ୍ତ ହେଲେ । ତାହାର ପର ବରଷ ଏକ ସାମାନ୍ୟ ତୂର୍ଯ୍ୟକର୍ମ ଅନୁରୋଧେ ଜ୍ୟେଷ୍ଠ ଭ୍ରାତା ସହିତ ବାଥ ନାମକ ନଗରକୁ ଗମନ କଲେ । ସେ ସ୍ଥାନରେ ଅସାଧାରଣ ନିପୁଣତା ପ୍ରକାଶଦ୍ୱାରା ଶୁଶ୍ରୂଷୁମାନଙ୍କୁ ପରିତୁଷ୍ଟ କରିବାରୁ ସେହି ନଗରର ଏକ ଦେବାଳୟରେ ତୂର୍ଯ୍ୟାଜୀବ ପଦ ପ୍ରାପ୍ତ ହେଲେ । ଅତଏବ ସେହି ଦିନଠାରୁ ତାହାଙ୍କୁ ସେହି ସ୍ଥାନରେ ବାସ କରିବାକୁ ହେଲା ।

ହର୍ଶେଲ ଏତେବେଳେ ଯେ ପଦରେ ନିଯୁକ୍ତ ହେଲେ ତାହା ସାମାନ୍ୟ ନୁହଇ । ଏତଦ୍‌ବ୍ୟତିରିକ୍ତ ରଙ୍ଗଭୂମି ଓ ଅନ୍ୟାନ୍ୟ ସ୍ଥାନରେ ତୂର୍ଯ୍ୟ ପ୍ରୟୋଗ ଏବଂ ଶିଷ୍ୟମାନଙ୍କୁ ଶିକ୍ଷା ପ୍ରଦାନଦ୍ୱାରା ଉତ୍ତମରୂପ ସୁଯୋଗ ଆଉ ଅବକାଶ ଥିଲା । ଅତଏବ ଅର୍ଥୋପାର୍ଜନ ଯେବେ ତାହାଙ୍କର ମୁଖ୍ୟାଭିପ୍ରାୟ ହୁଅନ୍ତା, ତାହା ହେଲେ ସେ ଅବଲମ୍ବିତ ବ୍ୟବସାୟଦ୍ୱାରା ବିଲକ୍ଷଣ ସଂଗ୍ରହ କରିପାରନ୍ତେ । ଏହିରୂପେ କର୍ମର ବାହୁଲ୍ୟ ହେଲେ ମଧ୍ୟ ବିଦ୍ୟାନୁଶୀଳନରେ ତାହାଙ୍କର ଯେ ଗାଢ଼ତର ଅନୁରାଗ ଥିଲା ତାହାର କିଞ୍ଚିନ୍ମାତ୍ର ସୁଦ୍ଧା ବ୍ୟତିକ୍ରମ ହେଲା ନାହିଁ । ପ୍ରତ୍ୟହ ତୂର୍ଯ୍ୟ ବିଷୟରେ ସମାଗତ ଦ୍ୱାଦଶ ଅଥବା ଚତୁର୍ଦ୍ଦଶ ଘଣ୍ଟା ପରିଶ୍ରମ କରି ଅତ୍ୟନ୍ତ କ୍ଲାନ୍ତ ହୁଅନ୍ତି ମାତ୍ର ତାହା ବାଦ ଏକ ମୂହୂର୍ତ୍ତ ସୁଦ୍ଧା ବିଶ୍ରାମ ନ କରି ପୁନର୍ବାର ବିଶୁଦ୍ଧ ଓ ବିମିଶ୍ର ଗଣିତବିଦ୍ୟାର ଅନୁଶୀଳନ ଆରମ୍ଭ କରନ୍ତି ।

ହର୍ଶେଲ ଏହି ରୂପେ କ୍ରମେ ୨ ରେଖାଗଣିତରେ ବ୍ୟୁତ୍ପନ୍ନ ହୋଇଉଠିଲେ ଏବଂ ତେତେବେଳେ ଆପଣାକୁ ପଦାର୍ଥ ବିଦ୍ୟା ଅନୁଶୀଳନରେ ସମର୍ଥ ଜ୍ଞାନ କଲେ । ପଦାର୍ଥ ବିଦ୍ୟା ନାନା ଶାଖା ମଧ୍ୟରେ ଜ୍ୟୋତିଷ ଓ ଦୃଷ୍ଟି ବିଜ୍ଞାନ ଏହି ଦୁଇ ବିଷୟରେ ତାହାଙ୍କର ବିଶେଷ ଅନୁରାଗ ଜନ୍ମିଲା । ଏବଂ ସେହି ସମୟରେ କେତେକ ଅଭିନବ ଆବିଷ୍କ୍ରିୟା ଦର୍ଶନେ ତାହାଙ୍କର ଅନ୍ତଃକରଣରେ ଅତ୍ୟନ୍ତ କୌତୂହଳ ଜାତ ବୃଦ୍ଧି ହେଲା । ତଦନୁସାରେ ସେ ଅବକାଶ ସମୟରେ ଉକ୍ତ ବିଦ୍ୟା ବିଷୟକ ଗବେଷଣାରେ ମନୋନିବେଶ କଲେ ।

ଗ୍ରହମଣ୍ଡଳୀବିଷୟକ ଯେ ଯେ ଅଦ୍ଭୁତ ବ୍ୟାପାର ପୁସ୍ତକରେ ପାଠ କରିଥିଲେ, ସେ ସକଳ ସ୍ୱୟଂ ପର୍ଯ୍ୟବେକ୍ଷଣ କରିବା ନିମନ୍ତେ କୌଣସି ପ୍ରତିବେଶବାସୀ ନିକଟରୁ, ଗୋଟିଏ ଦ୍ୱିପାଦ ପ୍ରମିତ ଦୂରବୀକ୍ଷଣ ମାଗିଆଣିଲେ । ତାହା ଦେଖି ଅପରିସୀମ ହର୍ଷପ୍ରାପ୍ତ ହୋଇ, କିଣିବା ମାନସରେ ଅବିଳମ୍ବେ ଇଂଲଣ୍ଡ ରାଜଧାନୀ ଲଣ୍ଡନ

ନଗରରୁ ତାହାଠାରୁ ବଡ଼ ଗୋଟାଏ ଆଣାଇବାର ଉଦ୍ୟୋଗ କଲେ । ମାତ୍ର ସେ ତାହାର ମୂଲ୍ୟ ଯେତେ ଅନୁମାନ କରିଥିଲେ ଏବଂ ତାହାଙ୍କର ଯେତେ ଦେବାକୁ ସଙ୍ଗତି ଥିଲା, ତାହାର ମୂଲ୍ୟ ତାହାଠାରୁ ଅଧିକ ହେବାରୁ କିଣି ପାରିଲେ ନାହିଁ; ସୁତରାଂ ସମ୍ଭବେନାସ୍ତି କ୍ଷୋଭ ପ୍ରାପ୍ତ ହେଲେ । ଅତ୍ୟନ୍ତ ଦୁଃଖିତ ହେଲେ ସତ୍ୟ, ମାତ୍ର ଭଗ୍ନୋତ୍ସାହ ହେଲେ ନାହିଁ । ସେ ତତ୍କ୍ଷଣାତ୍ ତୁଲ୍ୟବଳ ଦୂରବୀକ୍ଷଣାନ୍ତର ନିର୍ମାଣ କାର୍ଯ୍ୟ ସ୍ୱହସ୍ତରେ ଆରମ୍ଭ କଲେ । ଏହି ବିଷୟରେ ବାରମ୍ବାର ବିଫଳ ପ୍ରଯତ୍ନ ହୋଇ ମଧ୍ୟ ପରିଶେଷେ ଚରିତାର୍ଥତା ଲାଭ କଲେ । ପ୍ରଯତ୍ନ ବିଫଳଦ୍ୱାରା ବରଞ୍ଚ ତାହାଙ୍କର ଉତ୍ସାହ ବୃଦ୍ଧି ହୁଏ ।

ଯେ ମାର୍ଗରେ ହର୍ଶେଲର ପ୍ରତିଭା [ ଖ ] ଦେଦୀପ୍ୟମାନ ହେବ ଏତେବେଳେ ସେ ସେହି ପଥରେ ପଥିକ ହେଲେ । ମଶୀହର ୧୭୭୪ ସାଲରେ ସେ ସ୍ୱହସ୍ତନିର୍ମିତ ସାଢ଼ିପାଞ୍ଚ ପାଦିକ ଦୂରବୀକ୍ଷଣ ✻ ଦ୍ୱାରା ଶନୈଶ୍ଚର ଗ୍ରହ ନିରୀକ୍ଷଣ କରି ଅନିର୍ବଚନୀୟ ଆନନ୍ଦ ପ୍ରାପ୍ତ ହେଲେ । ଦୂରବୀକ୍ଷଣ ନିର୍ମାଣ ଓ ଜ୍ୟୋତିଷ ସମ୍ବନ୍ଧୀୟ ଆବିଷ୍କ୍ରିୟା ବିଷୟରେ ସେ ଏତାଦୃଶ ସାଧାରଣ ସିଦ୍ଧିପରମ୍ପରା ଘଟିଅଛି ଏହି ତାହାର ସୂତ୍ରପାତ ହେଲା । ଏତେବେଳେ ହର୍ଶେଲ ବିଦ୍ୟାନୁଶୀଳନ ବିଷୟରେ ପୂର୍ବଠାରୁ ଅଧିକତର ଅନୁରାଗ ସମ୍ପନ୍ନ ହୋଇ ସମଧିକ ସମୟ ଲାଭ ବାସନାରେ ଅର୍ଥଲାଭ ପ୍ରତିରୋଧ ସ୍ୱୀକାର କରି ଶୁଦ୍ଧା, ସ୍ୱୀୟ ବ୍ୟବସାୟିକ କର୍ମ ଓ ଶିଷ୍ୟ ସଂଖ୍ୟା କ୍ରମେ ୨ ସଙ୍କୋଚ କରିବାକୁ ଲାଗିଲେ; ଏବଂ ସର୍ବପ୍ରଥମ ଯାଦୃଶ ଯନ୍ତ୍ର ନିର୍ମାଣ କରିଥିଲେ ଅବକାଶ ସମୟରେ ବ୍ୟାପାରାନ୍ତର ବିରହିତ ହୋଇ, ତାହାଠାରୁ ଅଧିକ ଶକ୍ତି ବିଶିଷ୍ଟ ଯନ୍ତ୍ରାନ୍ତର ନିର୍ମାଣରେ ବ୍ୟାପୃତ ରହିଲେ । ଏହି ରୂପେ ସପ୍ତଦଶ ଓ ବିଂଶତି ପାଦ ପରିମିତ ଦୂରବୀକ୍ଷଣ ନିର୍ମିତ ହୋଇଲା । ଏହି ସକଳ ଯନ୍ତ୍ର ମୁକୁର ନିର୍ମାଣରେ ସେ ଅକ୍ଲିଷ୍ଟ ଅଧ୍ୟବସାୟ ପ୍ରଦର୍ଶନ କରିଅଛନ୍ତି । ସାତ ପାଦିକ ଦୂରବୀକ୍ଷଣ ପାଇଁ ମନୋମତ ଖଣ୍ଡେ ମୁକୁର ପ୍ରସ୍ତୁତ କରିବା ନିମନ୍ତେ ସେ କ୍ରମେ ୨ ଅନ୍ୟୂନ ଦୁଇ ଶତ ଖଣ୍ଡ ଗଠନ ଆଉ ତାହାର ପରୀକ୍ଷା ଅବିରକ୍ତ ଚିତ୍ତରେ କରିଥିଲେ । ଯେତେବେଳେ ସେ ମୁକୁର ନିର୍ମାଣ କରିବାକୁ ବସନ୍ତି କ୍ରମାଗତ ୧୨ । ୧୪ ଘଣ୍ଟା କାଳ ପରିଶ୍ରମ କରନ୍ତି; ଏହି ସମୟରେ ଏକ ମୁହୂର୍ତ୍ତ ଶୁଦ୍ଧା ବିରତ ହୁଅନ୍ତି ନାହିଁ । ଆଉ କଥା ଥାଉ ଆହାର ପାଇଁ ଶୁଦ୍ଧା ଆରବ୍ଧ କର୍ମରୁ ହସ୍ତୋତ୍ତୋଳନ କରନ୍ତି

---

✻ ଆଲୋକର କିରଣ ମସୃଣ ବକ୍ରିକା ଯେ ଦୂରବୀକ୍ଷଣର ମୁକୁରରେ ପ୍ରତିଫଳିତ ହୋଇ ସରଳରେଖାରେ ଗମନ କରି ପ୍ରତିବିମ୍ବ ସ୍ୱରୂପେ ପରିଣତ ହୁଏ, ଏପରି ପାଞ୍ଚ ଫୁଟ ଦୀର୍ଘ ଦୂରବୀକ୍ଷଣ ।

ନାହିଁ । 'ସେହି ସମୟରେ ସହୋଦରମାନେ ଯନ୍ତ୍ର କିଣିତ ଯାହା ମୂଲ୍ୟକୁ ହଠାଇ ଦିଅନ୍ତି ସେହି ମାତ୍ର ଆହାର ହୁଏ ସେ ଏହି ଭୟ କରନ୍ତି ଯେ କର୍ମ ଆରମ୍ଭ କରି ମଧ୍ୟରେ ତ୍ରୁଟି ଦେଲେ ସମ୍ୟକ ସମାଧାନ ବିଷୟରେ ବାଧା ଘଟିପାରେ । ସେ ମୁକୁର ନିର୍ମାଣ ବିଷୟରେ ପ୍ରଚଳିତ ନିୟମର ନିତାନ୍ତ ବଶବର୍ତ୍ତୀ ନ ହୋଇ ସ୍ୱୀୟ ବୁଦ୍ଧି କୌଶଳଦ୍ୱାରା ଅଧିକାଂଶ ସମ୍ପାଦନ କରନ୍ତି ।

ହର୍ଶେଲ ମଶୀହର ୧୭୮୧ ସାଲେ ମାର୍ଚ୍ଚ ମାସ ୩ ତାରିଖରେ ଯେ ଏକ ଗ୍ରହ ଆବିଷ୍କ୍ରିୟା କଲେ ବୋଧ ହୁଏଇ ସବୁଠାରୁ କେବଳ ତାହାଦ୍ୱାରା ସେ ସମଧିକ ବିଖ୍ୟାତ ହୋଇଅଛନ୍ତି । ସେ କ୍ରମାଗତ ପ୍ରାୟ ଦେଢ଼ ବରଷ ନଭୋମଣ୍ଡଳ ପର୍ଯ୍ୟବେକ୍ଷଣରେ ବ୍ୟାପୃତ ଥିଲେ । ଦୈବ ଯୋଗେ ଉକ୍ତ ଦିବସ ସନ୍ଧ୍ୟା ସମୟରେ ସେହି ସ୍ୱହସ୍ତ ନିର୍ମିତ ଅତ୍ୟୁତ୍କୃଷ୍ଟ ସାତ ପାଦକ ପ୍ରାତିଫଳିକ ଦୂରବୀକ୍ଷଣ ନଭୋମଣ୍ଡଳୈକଦେଶରେ ପ୍ରୟୋଗ କରି ଗୋଟିଏ ନକ୍ଷତ୍ର ଦେଖିବାକୁ ପାଇଲେ ବୋଧ ହେଲା ତାହାର ସନ୍ନିହିତ ସକଳ ନକ୍ଷତ୍ରଠାରୁ ତାହାର ପ୍ରଭା ସ୍ଥିରତର । ଏହି ହେତୁ ପ୍ରଯୁକ୍ତ ଓ ତଦୀୟ ଆକାରଗତ ଅନ୍ୟାନ୍ୟ ବୈଲକ୍ଷଣ୍ୟ ଦର୍ଶନରେ ସନ୍ଦେହ ଯୁକ୍ତ ହୋଇ ତଦ୍ୱିଷୟରେ ସବିଶେଷ ଅଭିନିବେଶ କରି ପର୍ଯ୍ୟବେକ୍ଷଣ ଆରମ୍ଭ କଲେ । କେତେକ ଘଣ୍ଟା ବାଦ ପୁନର୍ବାର ଦେଖିଲେ ଯେ ସେ ସ୍ଥାନତ୍ୟାଗ କରିଅଛି, ଏକଥା ଉତ୍ତମ ରୂପେ ବୁଝିବାକୁ ପାରି, ସେ ସାତିଶୟ ବିସ୍ମୟାବିଷ୍ଟ ହେଲେ । ପରଦିବସ ଏହି ବିସ୍ମୟର ଅନେକ ସନ୍ଦେହ ଦୂର ହେଲା । ପ୍ରଥମେ ତାହାଙ୍କର ଅନ୍ତଃକରଣରେ ଏହି ସନ୍ଦେହ ଉପସ୍ଥିତ ହୋଇଲା ଯେ, ପୂର୍ବ ୨ ଥର ଯାହା ଦେଖିଥିଲୁଁ ଏହା ସେହି ନକ୍ଷତ୍ର କି ନା । ମାତ୍ର ଆଉ କେତେକ ଦିନ କ୍ରମାଗତ ପର୍ଯ୍ୟବେକ୍ଷଣ କରିବାରୁ ତଦ୍ୱିଷୟକ ସକଳ ଦ୍ୱୈଧ ଅନ୍ତର୍ହିତ ହେଲା ।

ଅନନ୍ତର ଏହି ସକଳ ବ୍ୟାପାର ରାଜକୀୟ ଜ୍ୟୋତିର୍ବିଦ ଡାକ୍ତର ମାସ୍କେଲିନର ଗୋଚର କଲେ । ସେ ଆଦ୍ୟୋପାନ୍ତ ବିବେଚନା କରି ଏହି ସିଦ୍ଧାନ୍ତ କଲେ, ଯେ ଏହା ଏକ ଅଭିନବ ବା ଧୂମକେତୁ ହୋଇପାରେ । ମାତ୍ର ଆଉ କେତେକ ମାସ କ୍ରମାଗତ ପର୍ଯ୍ୟବେକ୍ଷଣଦ୍ୱାରା ଏହି ଭ୍ରାନ୍ତି ନିରାକୃତ ହୋଇଲା । ଏତତ୍‌ବେଳେ ସ୍ପଷ୍ଟ ବୁଝି ପାରିଲେ ଯେ, ଏହା ଏକ ଅନାବିଷ୍କୃତ ନୂତନ ଗ୍ରହ, ଧୂମକେତୁ ନୁହଇ । ଆମ୍ଭମାନଙ୍କର ଅଧିଷ୍ଠାନଭୂତା ପୃଥିବୀ ଯେପରି ସୌର ଜଗତର ଅନ୍ତର୍ଗତ ଏହି ନୂତନ ଗ୍ରହ ମଧ୍ୟ ସେହି ପରି ତଦନ୍ତର୍ବର୍ତ୍ତୀ । * ତେତେବେଳେ ତୃତୀୟ ଜର୍ଜ

* ସୂର୍ଯ୍ୟସିଦ୍ଧାନ୍ତ ପ୍ରଭୃତି ମତରେ ପୃଥିବୀ ସ୍ଥିରା; ଆଉ ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ, ବୁଧ ପ୍ରଭୃତି ଗ୍ରହଗଣ ତାହାର ଚତୁର୍ଦ୍ଦିଗରେ ପରିଭ୍ରମଣ କରନ୍ତି । ମାତ୍ର ଅଧୁନାତନ ଇଉରୋପୀୟ ପଣ୍ଡିତମାନେ ଯେ ଅଖଣ୍ଡନୀୟ ଅଭ୍ରାନ୍ତ ସିଦ୍ଧାନ୍ତ କରି

ଇଂଲଣ୍ଡରେ ଅଧୀଶ୍ୱର ଥିଲେ । ହର୍ଶେଲ ତାହାଙ୍କର ମର୍ଯ୍ୟାଦା ନିମନ୍ତେ ତଦୀୟ ନାମାନୁସାରେ ଆବିଷ୍କୃତ ନକ୍ଷତ୍ରର ନାମ "ଜର୍ଜିୟମ ସାଇଡ଼ସ୍" ଅର୍ଥାତ୍ ଜର୍ଜ ନକ୍ଷତ୍ର ଥୋଇଥିଲେ । ମାତ୍ର ଇୟୁରପର [ଇୟୁରୋପର] ପ୍ରଦେଶାନ୍ତରସ୍ଥ ଜ୍ୟୋତିର୍ବେତ୍ତାମାନେ ଏହାର "ୟୁରେନାସ" ଏହି ଆଖ୍ୟା ପ୍ରଦାନ କଲେ । ଏବଂ ଆବିଷ୍କର୍ତ୍ତାର ନାମାନୁସାରେ କେହି କେହି ଏହି ଗ୍ରହକୁ ହର୍ଶେଲ ମଧ୍ୟ କହନ୍ତି । ତଦନନ୍ତର ହର୍ଶେଲ କ୍ରମେ କ୍ରମେ ଆବିଷ୍କୃତ ଗ୍ରହର ଛ ପାରିପାର୍ଶ୍ୱିକ ଅର୍ଥାତ୍ ଚନ୍ଦ୍ର ପ୍ରକାଶ କଲେ ।

ଜର୍ଜିୟମ ସାଇଡ଼ସର ଆବିଷ୍କ୍ରିୟା ବାର୍ତ୍ତା ପ୍ରଚାର ହେଲେ ହର୍ଶେଲର ନାମ ଏକାବେଳେ ଜଗଦ୍ବିଖ୍ୟାତ ହେଲା । ଏହି ଘଟନାର କେତେକ ମାସ ବାଦ

---

ଅଛନ୍ତି, ତାହା ପୂର୍ବୋକ୍ତ ମତର ନିତାନ୍ତ ବିପରୀତ । ସେମାନଙ୍କ ମତରେ ସୂର୍ଯ୍ୟ ସକଳର କେନ୍ଦ୍ର ଅର୍ଥାତ ମଧ୍ୟବର୍ତ୍ତୀ; ଆଉ ଗ୍ରହଗଣ ତାହାର ଚତୁର୍ଦ୍ଦିଗରେ ପରିଭ୍ରମଣ କରନ୍ତି । ସୂର୍ଯ୍ୟ ଗ୍ରହମଧ୍ୟରେ ପରିଗଣିତ ନୁହଇ; ଯେମାନେ ସୂର୍ଯ୍ୟ ଚତୁର୍ଦ୍ଦିଗରେ ପରିଭ୍ରମଣ କରନ୍ତି କେବଳ ସେମାନଙ୍କୁ ଗ୍ରହ ବୋଲଯାଏ । ପୃଥିବୀ, ବୁଧ ଓ ଶୁକ୍ର ପ୍ରଭୃତି ଗ୍ରହପରି ଯଥା ନିୟମରେ ସୂର୍ଯ୍ୟ ଚତୁର୍ଦ୍ଦିଗରେ ପରିଭ୍ରମଣ କରନ୍ତି; ଅତଏବ ଏମାନେ ଗ୍ରହ ମଧ୍ୟରେ ପରିଗଣିତ । ଆଉ ଯେମାନେ କୌଣସି ଗ୍ରହର ଚତୁର୍ଦ୍ଦିଗରେ ଭ୍ରମଣ କରନ୍ତି ସେମାନଙ୍କୁ ଉପଗ୍ରହ କିମ୍ବା ସେହି ସେହି ଗ୍ରହର ପାରିପାର୍ଶ୍ୱିକ କୁହାଯାଏ । ଚନ୍ଦ୍ର ପୃଥିବୀର ଚତୁର୍ଦ୍ଦିଗରେ ପରିଭ୍ରମଣ କରେ, ଏକାରଣ ଚନ୍ଦ୍ର ସ୍ୱତନ୍ତ୍ର ଗ୍ରହ ନୁହଇ ଏହି ଏକା [ଏକ] ଉପଗ୍ରହ ଓ ପୃଥିବୀ ଗ୍ରହର ପାରିପାର୍ଶ୍ୱିକ ମାତ୍ର । ଏକ ସୂର୍ଯ୍ୟ ଓ ତାହାର ଚତୁର୍ଦ୍ଦିଗ ପରିଭ୍ରମଣକାରୀ ଯାବତୀୟ ଗ୍ରହ ଉପଗ୍ରହ ଓ ଧୂମକେତୁଗଣ ଏହି ସମସ୍ତଙ୍କର ଏକ ନାମ ସୌର ଜଗତ । ସୂର୍ଯ୍ୟ ସକଳର କେନ୍ଦ୍ର; ଆଉ ବୁଧ, ଶୁକ୍ର, ପୃଥିବୀ, ମଙ୍ଗଳ, ବେଷ୍ଟା, କାଲ୍ପିଗ, ଜୁନୋ, ଅଷ୍ଟ୍ରିୟା, ସିରିସ, ଆଇରିସ, ପ୍ଲୋରା, ଡ଼ାଏନା, ବୃହସ୍ପତି, ହର୍ଶେଲ, ଶନୈଶ୍ଚର, ୟୁରେନସ ଓ ନେପଚ୍ୟୂନ ଏହି ସପ୍ତଦଶ ଗ୍ରହ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଭ୍ରମଣ କରନ୍ତି । ପୃଥିବୀର ଏକମାତ୍ର ପାରିପାର୍ଶ୍ୱିକ, ବୃହସ୍ପତିର ଚାରି, ଶନୈଶ୍ଚରର ଆଠ, ୟୁରେନସର ଛ ଆଉ ନେପଚ୍ୟୂନର ଗୋଟିଏ ମାତ୍ର ଜ୍ଞାତ ହୋଇଅଛି । ଏହି ସପ୍ତଦଶ ଗ୍ରହ ଭିନ୍ନ ଆହୁରି ମଧ୍ୟ ଅନେକ ଗ୍ରହ ଆବିଷ୍କୃତ ହେବାର ସମ୍ଭାବନା ଅଛି । ଅନୁମାନ ହୁଏ ଏହି ସୌରଜଗତରେ ବହୁ ସହସ୍ର ଧୂମକେତୁ ଅଛି । ଗ୍ରହ ଉପଗ୍ରହମାନେ ନିଜେ ତେଜୋମୟ ନୁହନ୍ତି, ତେଜୋମୟ ସୂର୍ଯ୍ୟର ଅଲୋକପାତଦ୍ୱାରା ଏହିରୂପ ପ୍ରତୀୟମାନ ହୁଏ । ଜ୍ୟୋତିର୍ବିଦମାନେ ଏହା ଏକ ପ୍ରକାର ସ୍ଥିର କରିଅଛନ୍ତି, ଯେ ସକଳ ନକ୍ଷତ୍ରର ପ୍ରଭା ଚଞ୍ଚଳ, ସେମାନେ ଏକ ଏକ ସୂର୍ଯ୍ୟ, ନିଜେ ତେଜୋମୟ ଏବଂ ଏକ ଏକ ଜଗତର କେନ୍ଦ୍ର । ଏହି ଅପରିଚ୍ଛିନ୍ନ ବିଶ୍ୱ ମଧ୍ୟରେ ଆମ୍ଭମାନଙ୍କର ସୌର ଜଗତପରି ଯେ କେତେ ଜଗତ ଅଛି ତାହା ଇୟତ୍ତା କରିବା ସାଧ୍ୟାତୀତ କର୍ମ ।

ଇଂଲଣ୍ଡେଶ୍ୱର ଏହି ଅଭିପ୍ରାୟରେ ତାହାଙ୍କର ବାର୍ଷିକ ଦ୍ୱି ସହସ୍ର ମୁଦ୍ରାବୃତ୍ତି ନିର୍ଦ୍ଧାରିତ କରି ଦେଲେ ଯେ, ସେ ବାଥ ନଗରୀର କର୍ମ ପରିତ୍ୟାଗ କରି ନିଶ୍ଚିନ୍ତ ମନେ ବିଦ୍ୟାନୁଶୀଳନରେ ରତ ହୋଇ ପାରିବେ । ହର୍ଶେଲ ତଦନୁସାରେ ସେହି କର୍ମ ପରିତ୍ୟାଗ କରି ୱିଣ୍ଡସରର ସନ୍ନିହିତ ସ୍ଲୋ ନାମକ ସ୍ଥାନରେ ବାସସ୍ଥାନ ନିରୂପଣ କଲେ । ଅତଃପର ସେ ଅନନ୍ୟକର୍ମା ଓ ଅନନ୍ୟମନା ହୋଇ କେବଳ ପଦାର୍ଥ ବିଦ୍ୟାନୁଶୀଳନରେ ରତ ହେଲେ । ବାସ୍ତବ ସେ କେବଳ ଦୂରବୀକ୍ଷଣ ନିର୍ମାଣ ଓ ଆକାଶମଣ୍ଡଳ ନିରୀକ୍ଷଣ କରି ଜୀବନର ଶେଷଭାଗ ଯାପନ କରିଅଛନ୍ତି ।

ଆମ୍ଭେ ପୂର୍ବେ ଯେ ନୂତନ ଗ୍ରହର ଆବିଷ୍କ୍ରିୟା ନିର୍ଦ୍ଦେଶ କରି ଆସିଲୁ ତାହା ଭିନ୍ନ ନାନାବିଧ ମହୋପକାରକ ଅଭିନବ ଆବିଷ୍କ୍ରିୟା ଓ ଅତର୍କିତତର ବହୁତର ନିପୁଣ ପ୍ରଗାଢ଼ କଳ୍ପନାଦ୍ୱାରା ଜ୍ୟୋତିର୍ବିଦ୍ୟାର ବିଶିଷ୍ଟ ରୂପ ଶ୍ରୀବୃଦ୍ଧି ସମ୍ପାଦନ କରିଅଛନ୍ତି । ସେ ପୂର୍ବ ୨ ଠାରୁ ଅଧିକାୟତ ଓ ଅଧିକ ଶକ୍ତିକ ପ୍ରତିଫଳକ ଦୂରବୀକ୍ଷଣ ନିର୍ମାଣ ବିଷୟରେ କେତେକ ମହୋପକାରିଣୀ ସୁବିଧା ଦେଖାଇ ଅଛନ୍ତି । ସେ ସ୍ଲୋ ନାମକ ସ୍ଥାନରେ ଇଂଲଣ୍ଡେଶ୍ୱର ପାଇଁ ଚତ୍ୱାରିଂଶତ ପାଦ ଦୀର୍ଘ ଯେ ଦୂରବୀକ୍ଷଣ ପ୍ରସ୍ତୁତ କରିଥିଲେ ତାହା ସର୍ବଠାରୁ ବୃହତ୍ । ମହୀଶ୍ୱର ୧୭୮୫ ସାଲରେ ଏହି ବୃହତ୍ତର ନଳ ନିର୍ମାଣ କରିବାକୁ ଆରମ୍ଭ କରିଥିଲେ । ୧୭୮୯ ସାଲରେ କାର୍ଯ୍ୟ ସମାପ୍ତ ଓ ଯନ୍ତ୍ରୋପରି ସନ୍ନିବେଶିତ ହୋଇ ବ୍ୟବହାରୋପଯୋଗୀ ହେଲା ସେହି ଯନ୍ତ୍ର ଅତିଶୟ ଜଟିଳ ଅଟେ ମାତ୍ର ପ୍ରଗାଢ଼ତର ବୁଦ୍ଧି କୌଶଳରେ ସମ୍ପାଦିତ ହୋଇଥିଲା । ଏହାଦ୍ୱାରା ସେହି ନଳର ସଞ୍ଚାଳନାଦି କ୍ରିୟା ସମ୍ପାଦିତ ହୁଏ । ଶନୈଶ୍ଚରର ଷଷ୍ଠ ପାରିପାର୍ଶ୍ୱିକ ବୋଲି ଯାହା ସମସ୍ତେ ଅନୁମାନ କରିଥିଲେ ସନ୍ନିବେଶିତ ଅବସ୍ଥାରେ ଏହି ଦୂରବୀକ୍ଷଣ ଦ୍ୱାରା ତାହା ଉଦ୍ଭାବିତ ହୋଇଲା । କିୟଦ୍ଦିନାନ୍ତର ତଦ୍ଦ୍ୱାରା ସପ୍ତ ପାରିପାର୍ଶ୍ୱିକ ମଧ୍ୟ ଆବିଷ୍କୃତ ହେଲା । ବର୍ତ୍ତମାନ ସେହି ନଳ ସ୍ୱସ୍ଥାନରୁ ଅପସାରିତ ହୋଇଅଛି । ଏବଂ ତାହା ବଦଳରେ ହର୍ଶେଲଙ୍କର ସୁବିଖ୍ୟାତ ପୁତ୍ର-ହସ୍ତ ବିନିର୍ମିତ ଅତ୍ୟୁତ୍କୃଷ୍ଟ ଅନ୍ୟ ଏକ ଦୂରବୀକ୍ଷଣ ସେ ସ୍ଥାନରେ ସ୍ଥାପନ କରା ହୋଇଅଛି, ଏହାର ଦୀର୍ଘତା ପୂର୍ବ ଯନ୍ତ୍ରରୁ ଅର୍ଦ୍ଧେକର ଅଧିକ ନୁହଇ ।

ଏହା ନିର୍ଦ୍ଦିଷ୍ଟ ଅଛି ଏହି ପ୍ରଧାନ ଜ୍ୟୋତିର୍ବିଦ, ସ୍ୱାଭିଲଷିତ ବିଦ୍ୟାର ଆଲୋଚନା ବିଷୟରେ ଏମନ୍ତ ଅନୁରକ୍ତ ଥିଲେ ଯେ, ଅନେକ ବର୍ଷ ପର୍ଯ୍ୟନ୍ତେ ନକ୍ଷତ୍ର ଦର୍ଶନ ଯୋଗ୍ୟ ସମୟରେ କେବେ ହେଁ ଶଯ୍ୟାରୂଢ଼ ହୁଅନ୍ତି ନାହିଁ । ଆଉ କି ଶୀତ କି ଗ୍ରୀଷ୍ମ ସକଳ ଋତୁରେ ନିଜ ଉଦ୍ୟାନ-ଅନାବୃତ ପ୍ରଦେଶରେ ପ୍ରାୟ ଏକାକୀ ଅବସ୍ଥିତ ହୋଇ ନକ୍ଷତ୍ର ପର୍ଯ୍ୟବେକ୍ଷଣ କାର୍ଯ୍ୟ ସମାଧାନ କରନ୍ତି । ସେହି

ସମସ୍ତ ଗବେଷଣା ଦ୍ୱାରା ଦୂରତରବର୍ତ୍ତୀ ନକ୍ଷତ୍ର ସକଳର ସ୍ଥିତି ଅବଗତ ହୋଇ ତଦ୍ବିଷୟ ବିଶେଷ ବିବରଣ ସ୍ୱାଭିପ୍ରାୟ ସହିତ ପତ୍ରାରୂଢ଼ କରି ପ୍ରଚାର କରନ୍ତି ।

ହର୍ଶେଲ ତତ୍କାଳୀନ ପ୍ରଧାନ ୨ ଜ୍ୟୋତିର୍ବିଦଗଣ ମଧ୍ୟରେ ଗଣନୀୟ ହୋଇଥିଲେ । ଆଉ ପଣ୍ଡିତସମାଜରେ ଏବଂ ନୃପତି ସନ୍ନିଧାନରେ ଯଥେଷ୍ଟ ମର୍ଯ୍ୟାଦା ପାଇଥିଲେ । ମସୀହର ୧୮୧୭ ସାଲେ ଯୁବରାଜ ଚତୁର୍ଥ ଜର୍ଜ ତାହାଙ୍କୁ (ନାଇଟ୍) ପଦ ପ୍ରଦାନ କଲେ । ହର୍ଶେଲ ପ୍ରଥମେ ସେନାସମ୍ପର୍କୀୟ ତୂର୍ଯ୍ୟସମ୍ପ୍ରଦାୟ ନିଯୁକ୍ତ ଏକ ଦରିଦ୍ର ବାଳକ ମାତ୍ର ଥିଲେ; ମାତ୍ର ବହୁ ମଙ୍ଗଳ ହେତୁଭୂତ ଜ୍ୟୋତିର୍ବିଦ୍ୟାର ଶ୍ରୀବୃଦ୍ଧି ବିଷୟରେ ଦୀର୍ଘ କାଳ ପର୍ଯ୍ୟନ୍ତ ଗରୀୟସୀ ଆୟାସ ପରମ୍ପରା ସ୍ୱୀକାର କରିବାରୁ, ପରିଶେଷେ ଏହି ରୂପେ ପୁରସ୍କୃତ ହୋଇଥିଲେ । ହର୍ଶେଲ ପରଲୋକ ଗମନ କେତେ ବରଷ ପୂର୍ବ ପର୍ଯ୍ୟନ୍ତ ଆକାଶମଣ୍ଡଳ ନିରୀକ୍ଷଣରୁ ଦୃଷ୍ଟି ବହିର୍ଭୂତ କରିଥିଲେ ନାହିଁ । ଅନନ୍ତର ମସୀହର ୧୮୨୨ ସାଲ ଆଗଷ୍ଟ ମାସ ୨୩ ତାରିଖରେ ଅଶୀତି ବୟଃକ୍ରମ ସମୟରେ ଲୋକଯାତ୍ରା ସମ୍ବରଣ କଲେ । ସେ ଯଥେଷ୍ଟ ବିଭବ ସହିତ ମର୍ଯ୍ୟାଦା ପ୍ରାପ୍ତ ହୋଇ ଏବଂ ଉତ୍ତରାଧିକାରୀମାନଙ୍କ ପାଇଁ ପ୍ରଚୁର ସମ୍ପତ୍ତି ରଖି ତନୁତ୍ୟାଗ କରିଅଛନ୍ତି । ଏହି ପରିବାର ତଦୀୟ ଅର୍ଜିତ ଧନ ସମ୍ପତ୍ତିପରି ତଦୀୟ କୀର୍ତ୍ତିର ମଧ୍ୟ ଉତ୍ତରାଧିକାରୀ ହୋଇଅଛନ୍ତି ।

---

# ସର ଆଇଜାକ ନିଉଟନ

ଯେ ବରଷ ଗାଲିଲିଓ ତନୁତ୍ୟାଗ କଲେ, ସେହି ବରଷ ସର ଆଇଜାକ ନିଉଟନ ଜନ୍ମଗ୍ରହଣ କଲେ । ସେ ଲିଙ୍କନସାୟରର ଅନ୍ତଃପାତି କୋଲ୍‌ଟର୍ଓ୍ୱାର୍ଥ ନାମକ ଗ୍ରାମେ ୧୬୪୨ ସାଲ ଡିସେମ୍ବର ମାସ ୨୫ ତାରିଖରେ ପୃଥିବୀରେ ଅବତୀର୍ଣ୍ଣ ହେଲେ । ତାହାଙ୍କର ପିତା ତାଦୃଶ ସଙ୍ଗତିପନ୍ନ ଲୋକ ଥିଲେ ନାହିଁ; କେବଳ କଷ୍ଟେ କୃଷିକର୍ମ ଅବଲମ୍ବନ କରି ଜୀବିକାନିର୍ବାହ କରୁଥିଲେ । ନିଉଟନ୍ ସୁବିଖ୍ୟାତ କୋପର୍ନିକସ ଓ ଗାଲିଲିଓ ଉଦ୍ଭାବିତ ବିଷୟ ସକଳ ସପ୍ରମାଣ କରାଇବା ପାଇଁ ଜନ୍ମଗ୍ରହଣ କରିଥିଲେ ।

ସେ ଆପଣା ମାତାଠାରୁ କିଞ୍ଚିତ୍ ଶିକ୍ଷାପ୍ରାପ୍ତ ହୋଇ ଦ୍ୱାଦଶ ବରଷ ବୟଃକ୍ରମ ସମୟରେ ଗ୍ରନ୍ଥାମ୍ ନଗରର ଲାଟିନ ପାଠଶାଳାକୁ ପ୍ରେରିତ ହେଲେ । ସେଠାରେ ତାହାଙ୍କର ଶିଳ୍ପବିଷୟକ ନୂତନ ୨ କୌଶଳ ପ୍ରକାଶଦ୍ୱାରା ଶୈଶବ କାଳରେ ତାହାଙ୍କର ଜ୍ଞାନର ଲକ୍ଷଣ ଦେଖାଗଲା । ସେହି ସକଳ ଶିଳ୍ପକୌଶଳ ଦର୍ଶନ କରି, ସେ ସ୍ଥାନର ଲୋକମାନେ ଚମତ୍କୃତ ହୋଇଥିଲେ । ବିଦ୍ୟାଳୟର ବାଳକମାନେ ବିଦାୟ ସମୟରେ ଅବସର ପାଇଲେ କ୍ରୀଡ଼ାରେ ରତ ହୁଅନ୍ତି; କିନ୍ତୁ ସେ ସେହି ସମୟରେ ନିବିଷ୍ଟମନା ହୋଇ ଘରଟଟ ପ୍ରଭୃତି ଯନ୍ତ୍ରର ପ୍ରତିରୂପ ନିର୍ମାଣ କରନ୍ତି । ଏକଦା ସେ ଗୁଟିଏ ପୁରୁଣା ବାକସ ପାଇ ପାଣିର ଘଡ଼ୀ ନିର୍ମାଣ କରିଥିଲେ । ସେହି ଘଡ଼ୀର ଶଙ୍କୁ ବାକସ ମଧ୍ୟରୁ ଅନବରତ ବହିର୍ଗତ ଜଳବିନ୍ଦୁ ପତନଦ୍ୱାରା ନିମଗ୍ନ କାଷ୍ଠ ଖଣ୍ଡର ପ୍ରତିଘାତରେ ପରିଚାଳିତ ହୁଏ; ଆଉ ସମୟ ବୋଧ ନିମନ୍ତେ ସେଥିରେ ଗୁଟାଏ ପ୍ରକୃତ ଶଙ୍କୁପଟ ଥିଲା ।

ନିଉଟନ ପାଠଶାଳାରୁ ବହିର୍ଗତ ହେଲେ ଏହା ସ୍ଥିର ହୋଇଥିଲା ଯେ, ତାହାଙ୍କୁ କୃଷିକର୍ମ ଅବଲମ୍ବନ କରିବାକୁ ହେବ କିନ୍ତୁ ଅତିସତ୍ୱର ପ୍ରକାଶ ପାଇଲା ଯେ ସେ ଏପରି କଷ୍ଟସାଧ୍ୟ କର୍ମ କରିବାକୁ କେବେହେଁ ସମର୍ଥ ହେବେ ନାହିଁ । ସର୍ବଦା ଏପ୍ରକାର ଦେଖାଯାଏ ଯେ, ଯେ ସମୟରେ ତାହାଙ୍କୁ ପଶୁରକ୍ଷଣ ଭୃତ୍ୟମାନଙ୍କ ପର୍ଯ୍ୟବେକ୍ଷଣ କରିବାକୁ ହୁଏ ତେତେବେଳେ ନିଶ୍ଚିନ୍ତ ମନେ ତରୁତଳରେ ଉପବିଷ୍ଟ ହୋଇ ଅଧ୍ୟୟନ

କରନ୍ତି । କୃଷି ଲବ୍ଧଦ୍ରବ୍ୟ ବିକ୍ରୟ ନିମନ୍ତେ ଗ୍ରନ୍ଥାମର ଆପଣଙ୍କୁ ପ୍ରେରିତ ହେଲେ, ସେ ସମଭିବ୍ୟାହାରୀ ବୃଦ୍ଧ ଦାସ ଉପରେ ସକଳ କାର୍ଯ୍ୟର ଭାର ଦେଇ, ପରିଶୁଷ୍କବୃକ୍ଷବେଦୀ ଉପରେ ଉପବେଶନ ପୂର୍ବକ ଗଣିତବିଷୟକ ପ୍ରଶ୍ନ ସମାଧାନ କରନ୍ତି । ଜନନୀ ତାହାଙ୍କର ବିଦ୍ୟାଭ୍ୟାସ ବିଷୟରେ ଏପ୍ରକାର ସ୍ୱାଭାବିକ ଅତି ପ୍ରଗାଢ଼ ଅନୁରାଗ ଦେଖି ସମୁତ୍ସୁକା ହୋଇ ପୁନର୍ବାର ଆଉ କେତେ ଦିନ ନିମନ୍ତେ ତାହାଙ୍କୁ ବିଦ୍ୟାଳୟକୁ ପଠାଇ ଦେଲେ । ପରେ ମଶୀହର ୧୬୬୦ ସାଲ ଜୁନ ମାସ ୫ ତାରିଖରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟସ୍ଥ ଅନ୍ତର୍ଗତ ଟ୍ରିନିଟି ନାମକ ବିଦ୍ୟାଳୟରେ ବିଦ୍ୟାର୍ଥୀ ରୂପେ ପରିଗୃହୀତ ହେଲେ ନିଉଟନ ପ୍ରଜ୍ଞା ପରିଶ୍ରମ ଓ ଅଦ୍ୱିତୀୟ କାଶ ନ୍ୟ ସଦାଚରଣଦ୍ୱାରା ଆଇଜାକ ବାରୋ ପ୍ରଭୃତି ଅଧ୍ୟାପକବର୍ଗର ଅନୁଗ୍ରହପାତ୍ର ଓ ସହାଧ୍ୟାୟୀଗଣର ପ୍ରଶଂସାଭୂମି ଓ ପ୍ରଣୟଭାଜନ ହୋଇ ଥିଲେ । ସେ କେମ୍ବ୍ରିଜରେ ପ୍ରବିଷ୍ଟ ହୋଇ ପ୍ରଥମତଃ ସାଣ୍ଡର୍ସନ ରଚିତ ନ୍ୟାୟଶାସ୍ତ୍ର, କେଲପର ପ୍ରଣୀତ ଦୃଷ୍ଟିବିଜ୍ଞାନ, ଓସ୍କାଲସ ଲେଟିନ୍ [କ୍ଲ] ଅଙ୍କପାଟିଗଣିତ, ଏହି କେତେ ଗ୍ରନ୍ଥ ପାଠ କଲେ; ଅନନ୍ତର ଧରିଶ୍ରମ ସହକାରେ ଡେକାର୍ଟ ରଚିତ ରେଖାଗଣିତ ମଧ୍ୟ ପାଠ କରିବାକୁ ଲାଗିଲେ । ଆଉ ଡେଡେବେଲେ ନକ୍ଷତ୍ର ବିଦ୍ୟାର କିଛି ୨ ଟିକା ଥିବାରୁ ତାହା ମଧ୍ୟ ପାଠ କରୁଥିଲେ । ସେଇ ଇଂଲଣ୍ଡରେ ଗ୍ରନ୍ଥ ଅତି ଅଳ୍ପମାତ୍ର ପାଠ କରୁଥିଲେ ଏଇ ପ୍ରକାର ପ୍ରସିଦ୍ଧ ଅଛି ଯେ ପ୍ରାଚୀନ ଗଣିତଜ୍ଞମାନଙ୍କର ଗ୍ରନ୍ଥ ଉତ୍ତମ ରୂପେ ପାଠ କରା ହୋଇ ନାହିଁ ବୋଲି ଉତ୍ତର କାଳରେ ଅନୁତାପ କରିଥିଲେ ।

ନିଉଟନ କେମ୍ବ୍ରିଜ ଅଧ୍ୟୟନ ସମୟରେ ଅଲୁଅ ପଦାର୍ଥର ତତ୍ତ୍ୱ ନିର୍ଣ୍ଣୟ ନିମନ୍ତେ ଅତ୍ୟନ୍ତ ଯତ୍ନବାନ ହୋଇଥିଲେ । ତାହା ପୂର୍ବରେ ଲୋକମାନଙ୍କର ଏହି ବିଷୟରେ ଅତ୍ୟଳ୍ପ ଜ୍ଞାନ ଥିଲା । ବିଖ୍ୟାତ ପଣ୍ଡିତ ଡେକାର୍ଟ ଏହି ସିଦ୍ଧାନ୍ତ କରିଥିଲେ ଯେ ଅନନ୍ତାକାଶବ୍ୟାପୀ ସ୍ଥିତିସ୍ଥାପକ ଗୁଣୋପେତ ଅତି ବିରଳ ପଦାର୍ଥ ବିଶେଷର ସଞ୍ଚାଳନଦ୍ୱାରା ଆଲୋକ ଉତ୍ପତ୍ତି ହୁଅଇ ନିଉଟନ ଏହିମତ ଖଣ୍ଡନ କଲେ । ସେ ଅନ୍ଧକାରାବୃତ ଗୃହମଧ୍ୟରେ ପ୍ରବେଶ ହୋଇ ବହୁ କୋଣବିଶିଷ୍ଟ ଖଣ୍ଡେ କାଚ ଘେନି କବାଟର ସୂକ୍ଷ୍ମ ଛିଦ୍ରଦ୍ୱାରା ତାହା ଉପରେ ସୂର୍ଯ୍ୟକିରଣ ପତିତ କରିବାକୁ ଲାଗିଲେ । ଏହି ରୂପ ପରୀକ୍ଷାଦ୍ୱାରା ଦେଖିବାକୁ ପାଇଲେ, ଆଲୋକ କାଚ ଭେଦ କରି ଯାଇ, ଏପରି ଭଙ୍ଗୁର ହୋଇ ଅଛି ଯେ, କାନ୍ଥ ଉପରେ ସପ୍ତ ପ୍ରକାର ଭିନ୍ନ ୨ ବର୍ଣ୍ଣ ପ୍ରକାଶ ପାଉଅଛି; ଅନନ୍ତର ଅସାଧାରଣ କୌଶଳ ପୂର୍ବକ ଅଶେଷ ପ୍ରକାର ପରୀକ୍ଷା କରି ଏହି କେତେ ମହୋପକାରକ ବିଷୟ ନିର୍ଦ୍ଧାରିତ କଲେ । ଆଲୋକ ପଦାର୍ଥ କିରଣାତ୍ମକ; ସେହି ସକଳ କିରଣକୁ ବିଭକ୍ତ କରି ଅଣ୍ଡ କରା ଯାଇ ପାରେ । ଶୁକ୍ଳ ଆଲୋକର ପ୍ରତ୍ୟେକ କିରଣରେ ଲୋହିତ ପିତବର୍ଣ୍ଣ, ନୀଳ

ଏହି ତିନି ମୂଳ ରଙ୍ଗ ଅଛି; ଏହି ତ୍ରିବିଧ କିରଣରେ ଅତିଶୟ ନ୍ୟୂନାଧିକ ଭଙ୍ଗୁର ହୋଇଥାଏ । ନିଉଟନର ଏହି ଅଭିନବ ଧାରଣା ଆବିଷ୍କ୍ରିୟାକୁ ଦୃଷ୍ଟିବିଜ୍ଞାନ ଶାସ୍ତ୍ରର ମୂଳସୂତ୍ର ସ୍ୱରୂପ ଗଣନା କରିବାକୁ ହେବ । ମଶୀହର ୧୬୬୫ ସାଲରେ କେମ୍ବ୍ରିଜ ନଗରରେ ଅକସ୍ମାତ୍ ମାରୀଭୟ ଉପସ୍ଥିତ ହେବାରୁ; ବିଶ୍ୱବିଦ୍ୟାଳୟର ପଢ଼ୁଆମାନଙ୍କୁ ସ୍ଥାନ ତ୍ୟାଗ କରିବାକୁ ହେଲା । ନିଉଟନ ମଧ୍ୟ ସେହି ସମୟରେ ଆତ୍ମରକ୍ଷା ନିମନ୍ତେ ଆପଣା ଘରକୁ ପଳାଇଲେ । ସେଠାରେ ପୁସ୍ତକାଳୟର ଅସଦ୍ଭାବ ପ୍ରଯୁକ୍ତ ଇଚ୍ଛାନୁରୂପ ପୁସ୍ତକ ପାଠ କରି ପାରୁଥିଲେ ନାହିଁ । ଏବଂ ପଣ୍ଡିତବର୍ଗର ଅସନ୍ନିଧାନ ପ୍ରଯୁକ୍ତ ଶାସ୍ତ୍ରୀୟ ଆଳାପର କିଛି ସୁବିଧା ଥିଲା ନାହିଁ । ତଥାପି ସେ ଏହି ସମୟରେ ଗୁରୁତ୍ୱ ପତନ ନିୟମ ଅର୍ଥାତ୍ ବସ୍ତୁ ସକଳ ଭୂତଳରେ ପଡ଼ିବାର ନିୟମ ପ୍ରକାଶ କଲେ । ଉକ୍ତ ମହତ୍ ବିଷୟ ଆବିଷ୍କ୍ରିୟାଦ୍ୱାରା ନିଉଟନର ଏହି ଅନଧ୍ୟାୟ କେତେ ବରଷ ତାଙ୍କ ଜୀବନର ଶ୍ଳାଘ୍ୟତମ ଭାଗ ଓ ବିଜ୍ଞାନ ଶାସ୍ତ୍ରୀୟ ଇତିବୃତ୍ତର ମଧ୍ୟ ଚିରସ୍ମରଣୀୟ ଭାଗ ବୋଲି ପରିଗଣିତ ହୋଇଅଛି ।

ଥରେ ସେ ବଗିଚ୍ଛ ମଝରେ ବସି ଅଛନ୍ତି, ଏମନ୍ତ ସମୟରେ ଦୈବାତ୍ ତାହାଙ୍କ ସମ୍ମୁଖବର୍ତ୍ତୀ [ ଶ୍ରୀ ] ଅତାଗଛରୁ ଏକ ଫଳ ପଡ଼ିଲା । ତାକୁ ଦେଖି ସେ ତତ୍କ୍ଷଣାତ୍ ବସ୍ତୁ ସକଳର ପତନ ନିୟମ ସାଧାରଣ କାରଣ ବିଷୟ ଆଲୋଚନାରେ ପ୍ରବୃତ୍ତ-ହେଲେ । ଅନନ୍ତର ସେ ଏହି ବିଷୟ ପୁନର୍ବାର ଆଲୋଚନା କରି ସ୍ଥିର କଲେ, ଯେ କାରଣାନୁସାରେ ଅତା ଭୂମିରେ ପଡ଼ିଲା ସେହି କାରଣରେ ଚନ୍ଦ୍ର ଓ ଗ୍ରହମଣ୍ଡଳୀ ସ୍ୱ କକ୍ଷରେ ବ୍ୟବସ୍ଥାପିତ ଅଛନ୍ତି । ଏହି ରୂପେ ଗୁରୁତ୍ୱ ନିୟମ ପ୍ରକାଶିତ ହେଲା ଏହି ନିୟମର ଜ୍ଞାନଦ୍ୱାରା ଜ୍ୟୋତିର୍ବିଦ୍ୟାର ନିଉଟନ ଅତିଶୟ ଶ୍ରୀବୃଦ୍ଧି ହୋଇଅଛି । ମଶୀହର ୧୬୬୭ ସାଲରେ ନିଉଟନ ବିଦ୍ୟାଳୟକୁ ପ୍ରତ୍ୟାଗମନ କରି ଛାତ୍ରବୃତ୍ତି ପ୍ରାପ୍ତ ହେଲେ । ଦୁଇ ବରଷ ପରେ ତାହାଙ୍କର ବନ୍ଧୁ ଡାକ୍ତର ବାରୋ ଗଣିତ ଶାସ୍ତ୍ରର ଅଧ୍ୟାପକ ପଦ ପରିତ୍ୟାଗ କରିବାରୁ ସେ ତତ୍ପଦରେ ନିଯୁକ୍ତ ହେଲେ । ସେ ଦୃଷ୍ଟି ବିଜ୍ଞାନ ବିଷୟରେ ଯେ ସକଳ ଅଭିନବ ସୁମହତ୍ ନିୟମ ପ୍ରକାଶ କରିଥିଲେ ପ୍ରଥମତଃ କିଛି ଦିନ ତଦ୍ୱିଷୟ ଉପଦେଶ ଦେଲେ । ଆଲୋକ ଓ ବର୍ଣ୍ଣ ବିଷୟରେ ସମ୍ପୂର୍ଣ୍ଣ ଜ୍ଞାନ ଥିବାରୁ ଆପଣାର ଅଭିନବ ମତ ଏମନ୍ତ ପରିଷ୍କାର ରୂପେ ବୁଝାଇ ଦେଲେ ଯେ ଶ୍ରୋତୃଗଣ ସନ୍ତୁଷ୍ଟ ମନରେ ଭୂରି ୨ ପ୍ରଶଂସା କଲେ ।

୧୬୭୧ ସାଲରେ ରୟେଲ ସୋସାଇଟୀ * ନାମକ ବିଜ୍ଞସ୍ତ ସମାଜର ଫେଲୋ ଅର୍ଥାତ୍ ସହଯୋଗୀ ହେଲେ । ଏପରି ପ୍ରସିଦ୍ଧ ଅଛି ଆଉ ୨ ସହଯୋଗୀ

---

* ଇଂଲଣ୍ଡର ଅଧୀଶ୍ୱର ଦ୍ୱିତୀୟ ଚାର୍ଲସ ପଦାର୍ଥବିଦ୍ୟାର ଉନ୍ନତି ନିମନ୍ତେ ସପ୍ତଦଶ ଶତାବ୍ଦୀରେ ଇଂଲଣ୍ଡର ରାଜଧାନୀ ଲଣ୍ଡନନଗରରେ ଏହି ସମାଜ ସ୍ଥାପନ

ପରି ସଭାର ବ୍ୟୟ ନିର୍ବାହ ନିମନ୍ତେ ପ୍ରତିସପ୍ତାହରେ ସ୍ୱୀକୃତ ଏକ ୨ ଶିଲିଂ ଦେବାକୁ ଅସମର୍ଥ ହେବାରୁ ତାହାଙ୍କୁ ଅଗତ୍ୟା ଅଦାନର ଅନୁମତି ପ୍ରାର୍ଥନା କରିବାକୁ ହୋଇଥିଲା । କାରଣ ତେତେବେଳେ ବିଦ୍ୟାଳୟର ବେତନ ଅଧ୍ୟାପକର ବେତନ ଭିନ୍ନ ଅନ୍ୟ କୌଣସି ପ୍ରକାର ଅର୍ଥାଗମର ଉପାୟ ଥିଲା ନାହିଁ । ଆଉ ପୈତୃକ ବିଷୟରୁ ଯେ କିଛି ୨ ଲାଭ ହୁଏ ତାହା ତାହାଙ୍କର ଜନନୀର ଓ ପରିବାରର ଗ୍ରାସାଚ୍ଛାଦନରେ ପର୍ଯ୍ୟବେଶିତ {ପର୍ଯ୍ୟବସିତ] ହୁଅଇ । ତାହାଙ୍କର ହୋନବୃତ୍ତି ଏତେ ଅଳ୍ପ ଥିଲା ଯେ ଆବଶ୍ୟକୀୟ ପୁସ୍ତକ ଓ ବୈଜ୍ଞାନିକ ଯନ୍ତ୍ର କ୍ରୟ ଏବଂ ଅନ୍ୟ ଲୋକର ଦାରିଦ୍ର୍ୟ ବିମୋଚନ ଏହି ଉଭୟ ସମ୍ପନ୍ନ ହେଲେ ସନ୍ତୁଷ୍ଟ ହୁଅନ୍ତି, ଏତଦ୍ ବ୍ୟତିରିକ୍ତ ଅର୍ଥାଭାବ କାରଣ କ୍ଷୁବ୍ଧ ହୁଅନ୍ତି ନାହିଁ ୧୬୮୩ ସାଲରେ ସେ ପ୍ରିନ୍‌ସିପିଆ ନାମକ ଏକ ଅତି ପ୍ରଧାନ ଗ୍ରନ୍ଥ ରଚନା କଲେ । ଏହି ପୁସ୍ତକ ଗଣିତ ଶାସ୍ତ୍ରାନୁସାରେ ପଦାର୍ଥବିଦ୍ୟାର ମୀମାଂସା କରା ହୋଇଅଛି । ୧୬୮୮ ସାଲରେ ଯେତେବେଳେ ରାଜବିପ୍ଲବ ଘଟିଲା, କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ପ୍ରତିରୂପ ହୋଇ ପାର୍ଲିଆମେଣ୍ଟ * ନାମକ ସମାଜରେ ଉପସ୍ଥିତ ହେବା ନିମନ୍ତେ ସମସ୍ତେ [ସ୍ତ] ତାହାଙ୍କୁ ମନୋନୀତ କଲେ; ଏବଂ ୧୭୦୧ ସାଲରେ ସେହି ମର୍ଯ୍ୟାଦାର ପଦ ପ୍ରାପ୍ତ ହେଲେ । ଯେ ସକଳ ଲୋକର ଯଥାର୍ଥ ଉପକାର ଓ ପୁରସ୍କାର କରିବାରେ କ୍ଷମତା ଥିଲା; ନିଉଟନର ଅସାଧାରଣ ଗୁଣ ସେମାନଙ୍କର ଗୋଚର ହେବାରୁ, ସେ ସେମାନଙ୍କ ଅନୁକୂଲ୍ୟ ବଳରେ ଟଙ୍କାଶାଳର ଅଧ୍ୟକ୍ଷ ପଦରେ ନିଯୁକ୍ତ ହେଲେ । ସୂକ୍ଷ୍ମାନୁସୂକ୍ଷ୍ମ ଅନୁସନ୍ଧାନ ବିଷୟରେ ଅତ୍ୟନ୍ତ ସହିଷ୍ଣୁତା ଓ ସବିଶେଷ ନୈପୁଣ୍ୟ ଥିବାରୁ ସବଠାରୁ ସେହି ପଦର ଉପଯୁକ୍ତ ଥିଲେ । ନିଉଟନ ମରଣ କାଳ ପର୍ଯ୍ୟନ୍ତେ ସେ ତତ୍କାର୍ଯ୍ୟ ସମ୍ପାଦନ କରି ସର୍ବତ୍ର ସୁଖ୍ୟାତି ପ୍ରାପ୍ତ ହୋଇଥିଲେ ।

ଅତଃପର ନିଉଟନ ବହୁତର ପ୍ରଶଂସା ଓ ପୁରସ୍କାର ପ୍ରାପ୍ତ ହେବାକୁ ଲାଗିଲେ । ଲିବନିଜ ନାମକ ଜଣେ ପ୍ରସିଦ୍ଧ ପଣ୍ଡିତ ନିଉଟନର ନବ ୨ ଆବିଷ୍କ୍ରିୟା

---

କରିଥିଲେ । ଏହି ସମାଜର ଲୋକମାନଙ୍କୁ ଫେଲୋ କୁହାଯାଏ । ଯେମାନେ ଅସାଧାରଣ ବିଦ୍ୟା ସମ୍ପନ୍ନ ହୁଅନ୍ତି ସେମାନେ କେବଳ ଫେଲୋର ଉପଯୁକ୍ତ । ସକଳ ଫେଲୋର ସଂଖ୍ୟା ଏକୋଇଶି ଜଣ ତାହାଙ୍କ ମଧ୍ୟରେ ଜଣେ ସଭାପତି ଜଣେ ସହକାରୀ ସଭାପତି, ଜଣେ ଧନାଧ୍ୟକ୍ଷ ଓ ଦୁଇ ଜଣ ସମ୍ପାଦକ ।

* ଇଂଲଣ୍ଡର ରାଜକାର୍ଯ୍ୟ କେବଳ ରାଜାର ଇଚ୍ଛାନୁସାରେ ସମ୍ପନ୍ନ ହୁଏ ନାହିଁ; ରାଜା ଏହି ସମାଜର ଇଚ୍ଛାନୁସାରେ ସକଳ କାର୍ଯ୍ୟ ନିର୍ବାହ କରନ୍ତି । ଏହି ସମାଜ ଦୁଇ ଶ୍ରେଣୀରେ ବିଭକ୍ତ, ପ୍ରଥମ ଶ୍ରେଣୀରେ ଦେଶର କେତେକ ସମ୍ଭ୍ରାନ୍ତ ଲୋକେ ଓ ୨ୟ ଶ୍ରେଣୀରେ ସାମାନ୍ୟ ଲୋକେ ଥାଆନ୍ତି ।

ନିଉଟନଙ୍କ ଅସାଧାରଣ ସମ୍ମାନ ଦର୍ଶନରେ ଈର୍ଷ୍ୟାପରବଶ ହୋଇ ତାହା ବିଲୋପ ବାସନାରେ ତାହାଙ୍କ ନିକଟକୁ ଏକ ପ୍ରଶ୍ନ ପ୍ରେରଣ କଲେ । ସେ ମନେ ମନେ ସିଦ୍ଧାନ୍ତ କରିଥିଲେ ନିଉଟନ କୌଣସି ରୂପେ ଏହି ପ୍ରଶ୍ନର ଉତ୍ତର ଦେଇ ପାରିବେ ନାହିଁ ତାହା । ହେଲେ ଆମ୍ଭର ପ୍ରାଧାନ୍ୟ ପ୍ରତିଷ୍ଠିତ ହେବ । ନିଉଟନ ଦିନଯାକ ଟଙ୍କାଶାଳରେ] ପରିଶ୍ରମ କରି ସାୟାହ୍ନ ସମୟରେ ସେହି ପ୍ରଶ୍ନ ପାଇଲେ ଏବଂ ଶୟନ ପୂର୍ବରେ ତାହା ସମାଧାନ କରି ରଖିଲେ । ତାହା ବାଦ ଆଉ କେହି କେତେବେଳେ ତାହାଙ୍କର ବିମଳ କୀର୍ତ୍ତି ଚନ୍ଦ୍ରରେ କଳଙ୍କ ଦେବାକୁ ଉଦ୍ୟତ ହୋଇ ନାହିଁ । ୧୭୦୫ ସାଲରେ ଇଂଲଣ୍ଡେଶ୍ୱର ନିଉଟନର ମାନ ସମ୍ବର୍ଦ୍ଧନା ନିମନ୍ତେ ତାହାଙ୍କୁ ନାଇଟ † ଉପାଧି ପ୍ରଦାନ କଲେ ।

ନିଉଟନ ଉଦାର ସ୍ୱଭାବ ପ୍ରଯୁକ୍ତ ସାମାନ୍ୟ ସାମାନ୍ୟ ଲୌକିକ ବ୍ୟାପାରରେ ମଧ୍ୟ ବିଶେଷ ଅବହିତ ଥିଲେ । ସର୍ବଦା ମିତ୍ରମାନଙ୍କ ନିକଟକୁ ସାକ୍ଷାତ୍ କରିବା ପାଇଁ ଯାଉଥିଲେ । ଏବଂ ସେମାନେ ମଧ୍ୟ ସାକ୍ଷାତ୍ କରିବାକୁ ଆସିଲେ ସମୁଚିତ ସମ୍ମାନ କରୁଥିଲେ । କଥୋପକଥନ ସମୟରେ ଆପଣା ପ୍ରାଧାନ୍ୟ ପ୍ରଖ୍ୟାନ କରନ୍ତି ନାହିଁ । ସେ ସ୍ୱଭାବରେ ସୁଶୀଳ, ଓ ସରଳ ଓ ପ୍ରଫୁଲ୍ଲ ଚିତ୍ତ ଥିଲେ; ଏହି ନିମନ୍ତେ ସକଳ ଲୋକେ ତାହାଙ୍କ ସହବାସ ଅଭିଳାଷ କରନ୍ତି ଲୋକମାନଙ୍କର ସର୍ବଦା ଯାତାୟାତଦ୍ୱାରା ଅପଚୟ ହେଲେ ମଧ୍ୟ ସେ ବିରକ୍ତ ହୁଅନ୍ତି ନାହିଁ । ସେ ଅବସର ପାଇବାମାତ୍ରେ କଲମ ଓ ପୁସ୍ତକ ଘେନି ବସନ୍ତି । ନିଉଟନ ଅତ୍ୟନ୍ତ ଦୟାଳୁ ଓ ଦାନଶୀଳ ଥିଲେ । ଏବଂ କୁହନ୍ତି ଯେମାନେ ଜୀବଦ୍ଦଶାରେ ଦାନ କରନ୍ତି ନାହିଁ ସେମାନଙ୍କର ଦାନ ଦାନ ନୁହେ । ଅତ୍ୟନ୍ତ ବୃଦ୍ଧାବସ୍ଥାରେ ଶୁଦ୍ଧା ତାହାଙ୍କ ବୁଦ୍ଧିର କିଞ୍ଚିତ ମାତ୍ର ବୈଲକ୍ଷଣ୍ୟ ଜନ୍ମି ଥିଲା ନାହିଁ । ଆଉ ଆହାର ନିୟମ ଓ ସର୍ବକାଳିକ ଚିତ୍ତର ପ୍ରଫୁଲ୍ଲିତ ଓ ସ୍ୱାଭାବିକ ଶରୀରର ପଟୁତା ପ୍ରଯୁକ୍ତ, ଜରା ତାହାଙ୍କୁ ପରାଭୂତ କରି ପାରିଲା ନାହିଁ । ସେ ନାତିଦୀର୍ଘ ଓ ନାତିଖର୍ବ ଓ କାନ୍ତିଉଜ୍ଜ୍ୱଳ ଶରୀର ବିଶିଷ୍ଟ ଥିଲେ । ତାହାଙ୍କ ନୟନରେ ସଜୀବତା, ତୀକ୍ଷ୍ଣତା ଓ ବୁଦ୍ଧିମତା ସ୍ପଷ୍ଟ ପ୍ରକାଶ ପାଉଥିଲା । ଦେଖିଲେ ତାହାଙ୍କର ଆକୃତି ଦୟାଳୁତାରେ ପରିପୂର୍ଣ୍ଣ ବୋଧ ହୁଏ । ଚରମଦଶା ପର୍ଯ୍ୟନ୍ତେ ତାହାଙ୍କର ଦର୍ଶନଶକ୍ତି ଅବ୍ୟାହତ ଥିଲା । ଶେଷ ବୟସରେ କେଶ ସକଳ

---

† ବହୁକକାଳ ପୂର୍ବରେ କୌଣସି ସେନା ସଂକ୍ରାନ୍ତ ପ୍ରଧାନ କର୍ମରେ ନିଯୁକ୍ତ ଏବଂ ପ୍ରଧାନ ବଣିକ ଐଶ୍ୱର୍ଯ୍ୟଶାଳୀ ଲୋକମାନେ ନାଇଟ ଉପାଧି ପ୍ରାପ୍ତ ହୁଅନ୍ତି । ଏଥିପାଇଁ ଏତେବେଳେ ତାହା ସମ୍ଭ୍ରମସୂଚକ ଉପାଧି ହୋଇଅଛି । ନାଇଟ ବଦଳରେ ସର ବ୍ୟବହାର ହୁଏ । ଯଥା—ସର ଆଇଜାକ ନିଉଟନ ।

ବରଫ ପରି ଶୁକ୍ଳବର୍ଣ୍ଣ ହୋଇ ଯାଇଥିଲା । ଚରମଦଶାରେ ତାହାଙ୍କର ଅତ୍ୟନ୍ତ ଦୈହିକ ଯନ୍ତ୍ରଣା ଘଟିଲା । କିନ୍ତୁ ସ୍ୱଭାବସିଦ୍ଧ ସହିଷ୍ଣୁତା ପ୍ରଭାବ ସେଥିରେ ନିତାନ୍ତ କାତର ହେଲେ ନାହିଁ । ଅନନ୍ତର ୧୭୨୭ ସାଲ ମାର୍ଚ୍ଚ ମାସ ୨୦ ତାରିଖରେ, ଚଉରାଶୀ ବରଷ ବୟଃକ୍ରମ ସମୟରେ କଳେବର ତ୍ୟାଗ କଲେ ।

ନିଉଟନର ଚରିତ ସାଧାରଣ ଲୋକର ଚରିତ ପରି ନୁହଇ । ଏହା ଏମନ୍ତ ସୁନ୍ଦର ଯେ ଚରିତ୍ରକ୍ଷ୍ୟାଯୁକ ଲୋକେ ତାହାଙ୍କ ଚରିତ ଲେଖି ୨ ପରମ ପରିତୋଷ ପ୍ରାପ୍ତ ହୁଅନ୍ତି । ଏବଂ ଯେ ଉପାୟରେ ସେ ମନୁଷ୍ୟମଣ୍ଡଳୀ ମଧ୍ୟରେ ଅବିସଂବାଦିତ ପ୍ରାଧାନ୍ୟ ପ୍ରାପ୍ତ ହୋଇଥିଲେ, ତାହା ପର୍ଯ୍ୟାଲୋଚନା କରିଲେ ମହୋପକାର ଓ ମହାର୍ଥଲାଭ ହୋଇପାରେ ।

ନିଉଟନ ଏମନ୍ତ ଅତ୍ୟୁତ୍କୃଷ୍ଟ ବୁଦ୍ଧିଶକ୍ତି ସମ୍ପନ୍ନ ଥିଲେ ଯେ ତାହାଙ୍କଠାରୁ ଅଳ୍ପବୁଦ୍ଧି ବିଶିଷ୍ଟ ଲୋକମାନେ ତାହାଙ୍କ ଜୀବନଚରିତ୍ର ପାଠ କରି ଅନେକ ସଦୁପଦେଶ ଲାଭ କରି ପାରିବେ । ସେ ଅଲୌକିକ ବୁଦ୍ଧିଶକ୍ତି ପ୍ରଭାବରେ ଗ୍ରହଣର ଗତି, ଧୂମକେତୁର କକ୍ଷ, ସମୁଦ୍ରର ଜଳୋଚ୍ଛ୍ୱାସ ଏହି ସକଳ ବିଷୟ ମୀମାଂସା କରି ଅଛନ୍ତି; ନିଉଟନ ଆଲୋକ ଓ ବର୍ଣ୍ଣ ଏହି ଦୁଇ ପଦାର୍ଥର ସ୍ୱରୂପ ନିର୍ଣ୍ଣୟ କରି ଅଛନ୍ତି । ତାହାଙ୍କ ପୂର୍ବରେ ଏବିଷୟ କାହାର ମନରେ ଉଦୟ ହୋଇନାହିଁ ।

ସାତିଶୟ ପରିଶ୍ରମ ଓ ଦକ୍ଷତା ସହକାରେ ଅଦ୍ଭୁତ ବିଶ୍ୱରଚନାର ଯଥାର୍ଥ ତାତ୍ପର୍ଯ୍ୟ ବ୍ୟାଖ୍ୟା କରି ଅଛନ୍ତି ଓ ତାହାଙ୍କର ସମୂହ ଗବେଷଣା ଦ୍ୱାରା ସୃଷ୍ଟିକର୍ତ୍ତାର ମହିମା, ପ୍ରଜ୍ଞା ଓ ଅନୁକମ୍ପା ପ୍ରକାଶ ପାଇଅଛି; ଏମନ୍ତ ଲୋକରେ ବୁଦ୍ଧିବିଦ୍ୟା ସମ୍ପନ୍ନ ହୋଇ ମଧ୍ୟ ଏମନ୍ତ ବିନୀତ ଥିଲେ ଯେ, ଆପଣା ବିଦ୍ୟାର କିଞ୍ଚିତ୍ ମାତ୍ର ଅଭିମାନ କରନ୍ତି ନାହିଁ । ତାହାଙ୍କର ଏହି ଏକ ସୁପ୍ରସିଦ୍ଧ ବାକ୍ୟ ଧରାତଳରେ ଜାଗରୁକ ଅଛି ଯେ, ଆମ୍ଭେ ବେଳା ଭୂମିରେ ବାଳକ ପରି ଉପଳଖଣ୍ଡ ସଙ୍କଳନ କରିଅଛୁଁ, କିନ୍ତୁ ଜ୍ଞାନାର୍ଣ୍ଣବ ପୂର୍ବେଭାବ ପୂର୍ଣ୍ଣ ରହିଅଛି ।



# ଗ୍ରୋଶ୍ୟସ

ଗ୍ରୋଶ୍ୟସ ୧୫୮୩ ସାଲରେ ହଲଣ୍ଡ ରାଜ୍ୟର ଅନ୍ତଃପାତୀ ଡେଲଫଟ ନଗରରେ ଜନ୍ମ ଗ୍ରହଣ କଲେ । ସେ ଶୈଶବ କାଳରେ ଅସାଧାରଣ ବିଦ୍ୟୋପାର୍ଜନଦ୍ୱାରା ଅତ୍ୟନ୍ତ ଗ୍ୟା[ଖ୍ୟା]ତି ପ୍ରାପ୍ତ ହୋଇଥିଲେ । ଅଷ୍ଟ ବରଷ ବୟଃକ୍ରମ ସମୟରେ ତାହାଙ୍କର କ୍ଷୁଦ୍ର କ୍ଷୁଦ୍ର କାବ୍ୟ ରଚନା କରିବାର କ୍ଷମତା ଜନ୍ମେ ଚତୁର୍ଦ୍ଦଶ ବୟସ ସମୟରେ ପଣ୍ଡିତସମାଜରେ, ଗଣିତ, ବ୍ୟବହାର ସଂହିତା ଓ ଦର୍ଶନଶାସ୍ତ୍ରର ବିଚାର କରିବାକୁ ପାରୁଁଥିଲେ । ୧୫୯୮ ସାଲରେ ହଲଣ୍ଡ ରାଜଦୂତ ବର୍ଣ୍ଣେବେଲଟର ସମଭିବ୍ୟାହାରେ ପାରିସ ରାଜଧାନୀକୁ ଗମନ କଲେ । ସେଠାରେ ନିପୁଣତା ଓ ସୁଶୀଳତାଦ୍ୱାରା ଫ୍ରାନସର ଅଧିପତି ସୁପ୍ରସିଦ୍ଧ ଚତୁର୍ଥ ହେନେରିର ନିକଟରୁ ଭୂୟସୀ ପ୍ରଶଂସା ପ୍ରାପ୍ତ ହେଲେ । ଏବଂ ସକଳ ସ୍ଥାନରେ ଅଦଭୁତ ପଦାର୍ଥ ବୋଲି ପରିଗଣିତ ଓ ପ୍ରଶଂସିତ ହୋଇଥିଲେ । ହଲଣ୍ଡ ପ୍ରତ୍ୟାଗମନର ପର ବ୍ୟବହାର ଜୀବର ବ୍ୟବସା ଅବଲମ୍ବନ କରିଲେ । ଏବଂ ସତର ବରଷ ବୟଃକ୍ରମ ସମୟରେ ଧର୍ମାଧିକରଣରେ ପ୍ରଥମଥର ଏପରି ଅସାଧାରଣ ରୂପେ ଆପଣାର ମତ ରକ୍ଷା କରିଥିଲେ, ଯେ ତଦ୍ଦ୍ୱାରା ଅତିପ୍ରଭୂତ ଖ୍ୟାତି ଓ ପ୍ରତିପତ୍ତି ଲାଭ କଲେ । ଏବଂ ଅଳ୍ପକାଳ ମଧ୍ୟରେ ପ୍ରଧାନ ବ୍ୟବହାର ଜୀବପଦରେ ଅଧିରୂଢ଼ ହେଲେ ।

ବିର ନଗରର ଅଧକ୍ଷର ମେରିଜର୍ସ ବର୍ସନାମ୍ନୀ ଏକ କନ୍ୟା ଥିଲା । ଗ୍ରୋଶ୍ୟସ ୧୬୦୮ ସାଲରେ ସେହି କାମିନୀର ପାଣିଗ୍ରହଣ କଲେ । ସେହି ରମଣୀର ରମଣୀୟ ଗୁଣଗ୍ରାମଦ୍ୱାରା ଗ୍ରୋଶ୍ୟସର ସହଧର୍ମିଣୀ ହେବାର ଯୋଗ୍ୟ ଥିଲେ । ଏବଂ ତାହାଙ୍କର ବନିତା ହେବାରୁ ତାଙ୍କ ଗୁଣରେ ସମୁଚିତ ସମାଦର କରା ହୋଇଥିଲା । କି ସମ୍ପତ୍ତି କି ବିପତ୍ତି ସକଳ ସମୟରେ ସେମାନେ ପରସ୍ପର ଅବିଚଳିତ ସଦ୍ଭାବ ଓ ବିଶୁଦ୍ଧ ପ୍ରଣୟ ଭାବରେ କାଳଯାପନ କରିବାକୁ ଲାଗିଲେ । କିଛି ଦିନ ଉତ୍ତାରେ ଦେଖାଗଲା ନିତ୍ୟୁଷ୍ଣିତ ସ୍ୱାମୀର କ୍ଲେଶ ଶାନ୍ତି ବିଷୟରେ ସେହି ପତିପ୍ରାଣା ରମଣୀର ଐକାନ୍ତିକ ପ୍ରଣୟର କି ପର୍ଯ୍ୟନ୍ତ ଉପଯୋଗିତା ହୋଇଥିଲା ।

ଗ୍ରୋଶ୍ୟସ ଅତ୍ୟନ୍ତ ମନ୍ଦ ସମୟରେ ଜନ୍ମଗ୍ରହଣ କରିଥିଲେ । ସେହି ସମୟରେ ମନୁଷ୍ୟସମାଜ ଓ ଧର୍ମ ଓ ଦଣ୍ଡନୀତି ବିଷୟକ ବିଷମ ବିସମ୍ବାଦଦ୍ୱାରା ଅତ୍ୟନ୍ତ ବିସଙ୍କୁଳ ଥିଲା । ମନୁଷ୍ୟ ମାନଙ୍କେ ଧର୍ମ ସମ୍ବନ୍ଧ କଳହରେ ଉନ୍ମତ୍ତ ଓ ଏବଂ

ଭିନ୍ନ ୨ ପକ୍ଷର ଔଦ୍ଧତ୍ୟ ଓ କଳହପ୍ରିୟତ୍ୱଦ୍ୱାରା ସୌଜନ୍ୟ, ଦୟା ଓ ଦାକ୍ଷିଣ୍ୟ ଏକାନ୍ତ ବିଲୁପ୍ତ ହୋଇଥିଲା । ଗ୍ରୋଶ୍ୟସ ଆର୍ମିଣୀୟ ସମ୍ପ୍ରଦାୟିକ † ଓ ସ୍ୱତନ୍ତ୍ର †† ପକ୍ଷୀୟ ଥିଲେ । ସେ ଆପଣାର ବ୍ୟବସାୟିକ କାର୍ଯ୍ୟୋପଲକ୍ଷରେ ଅନ୍ତଃସତ୍ତ୍ୱର ଏମନ୍ତ ବିବାଦ ବାଗୁରରେ ପତିତ ହେଲେ ଯେ ତାହାଠାରୁ ମୁକ୍ତ ହେବା ଅତ୍ୟନ୍ତ ଦୁରୂହ । ତାହାଙ୍କ ତୁଲ୍ୟ ମତାବଲମ୍ବୀ ପୂର୍ବସହାୟ ବର୍ଣ୍ଣବେଲ୍ଡ ଅଭିଦ୍ରୋହାଭିଯୋଗରେ ଧର୍ମାଧିକରଣରେ ନୀତ ହେଲେ, ସେ ଆପଣାର ଲେଖନୀ ଓ ଆଧିପତ୍ୟଦ୍ୱାରା ତାହାଙ୍କର ଯଥୋଚିତ ସହାୟତା କଲେ । କିନ୍ତୁ ତାହାଙ୍କର ସକଳ ପ୍ରୟାସ ବିଫଳ ହେଲା । ୧୬୧୯ ସାଲରେ ବର୍ଣ୍ଣବେଲ୍ଡର ପ୍ରାଣଦଣ୍ଡ ହେଲା ଏବଂ ଗ୍ରୋଶ୍ୟସ ଦକ୍ଷିଣ-ହଲଣ୍ଡ ଅନ୍ତଃପାତୀ ଲୋବେଷ୍ଟିନର ଦୁର୍ଗ ମଧ୍ୟରେ ଯାବଜ୍ଜୀବନ କାରାରୁଦ୍ଧ ହେଲେ ଏହି ରୂପ ଦାରୁଣ ଅବିଚାରଦ୍ୱାରା ତାହାଙ୍କର ସର୍ବସ୍ୱ ହୃତ ହେଲା ।

ବନ୍ଦିତ୍ୱାରମ୍ଭ ପୂର୍ବରେ ଗ୍ରୋଶ୍ୟସ କୌଣସି ସାଂଘାତିକ ରୋଗରେ ଆକ୍ରାନ୍ତ ହୋଇଥିଲେ । ସେ ସମୟରେ ତାହାଙ୍କର ସହଧର୍ମିଣୀ ତାହାଙ୍କ ସହିତ ସାକ୍ଷାତ୍ କରିବା ନିମନ୍ତେ ନିତାନ୍ତ ଉତ୍ସୁକ ହୋଇ ଶୁଦ୍ଧା କୌଣସି କ୍ରମେ ତାହାଙ୍କ ନିକଟକୁ ଯାଇ ପାରିଲେ ନାହିଁ । କିନ୍ତୁ ତାହାଙ୍କର ଦଣ୍ଡବିଧାନ ପରେ କାରାଧିବାସ ସହଚରୀ ହେବା ପ୍ରାର୍ଥନାରେ ବ୍ୟଗ୍ରତା ପ୍ରଦର୍ଶନ ପୂର୍ବକ ଆବେଦନ କରିବାରୁ ଅନୁମତି ପ୍ରାପ୍ତ ହେଲେ । ଗ୍ରୋଶ୍ୟସ ତାହାଙ୍କର ଏହି ରୂପ ଅନିର୍ବଚନୀୟ ଅନୁରାଗ ଦର୍ଶନେ ମୁଗ୍ଧ ଓ ପ୍ରୀତ ହୋଇ ଏକସ୍ୱରଚିତ କାବ୍ୟରେ ତାହାର ଭୂୟସୀ ପ୍ରଶଂସା ଲେଖିଲେ । ଏବଂ ତାହାଙ୍କର ସନ୍ନିଧାନାବସ୍ଥାନାକୁ କାରାବାସ କ୍ଲେଶରୂପ ଅନ୍ଧତମସରେ ଦିବାକରୋଦୟ ରୂପ ବର୍ଣ୍ଣନା କଲେ ।

ହଲଣ୍ଡର ସକଳ ଲୋକେ ଗ୍ରୋଶ୍ୟସର ଗ୍ରାସାଚ୍ଛାଦନ ନିର୍ବାହ ନିମନ୍ତେ ଆନୁକୂଲ୍ୟ କରିବାର ପ୍ରସ୍ତାବ କଲେ; କିନ୍ତୁ ତାହାଙ୍କର ପତ୍ନୀ ସମୁଚିତ ଗର୍ବ ପ୍ରଦର୍ଶନ ପୂର୍ବକ ଉତ୍ତର ଦେଲେ, ଆମ୍ଭର ଯାହା ସମ୍ବଳ ଅଛି ସେଥିରେ ତାହାଙ୍କର ଆବଶ୍ୟକୀୟ ବ୍ୟୟ ନିର୍ବାହ କରି ପାରିବୁଁ; ଅପର ଲୋକର ସହାୟତା ଆବଶ୍ୟକ

---

† ଖ୍ରୀଷ୍ଟ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଆର୍ମିଣୀୟ ନାମକ ଏକ ଲୋକ ଏହି ଅଭିନବ ସମାଜ ସ୍ଥାପନ କରିଥିଲେ । ସ୍ଥାପକର ନାମାନୁସାରେ ଏହି ସମାଜରେ ନାମହୋଇ ଅଛି ଆଉ ୨ ସାମାଜିକ ଲୋକମାନଙ୍କ ସହିତ ଏମାନଙ୍କର ଅତ୍ୟନ୍ତ ବିଦ୍ୱେଷ ଥିଲା ।

†† ଯେ ସେଠାରେ ରଜା ନାହିଁ ସର୍ବସାଧାରଣ ଲୋକମାନଙ୍କଦ୍ୱାରା ରାଜକାର୍ଯ୍ୟ ସମ୍ପନ୍ନ ହୁଏ ତାହାକୁ ସ୍ୱତନ୍ତ୍ର କୁହାଯାଏ ।

ନାହିଁ । ସେ ସ୍ତ୍ରୀ ଜାତି ମୂଳର ବୃଥା ଶୋକପରବଶ ନ ହୋଇ ସାଧ୍ୟାନୁସାରେ ପତିଙ୍କୁ ସୁଖୀ ଓ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରିଥିଲେ । ଗ୍ରୋଶ୍ୟସର ଅଧ୍ୟୟନାନୁରାଗ ଏକ ବିନୋଦନୋପାୟ ହୋଇଥିଲା । ବାସ୍ତବ ଗୁଣବତୀ ରମଣୀ ସହାୟ ଓ ପ୍ରିୟ ପୁସ୍ତକମଣ୍ଡଳୀ ପରିବୃତ ଲୋକର ସାଂସାରିକ କଷ୍ଟରେ ବିମର୍ଷ ହେବାର କିସନ୍ଧ୍ୟାନ ? ତଥାପି, ଗ୍ରୋଶ୍ୟସ ଯାବଜ୍ଜୀବନ କାରାବାସ ରୂପ ଦଣ୍ଡରେ ଦଣ୍ଡିତ ହୋଇ ଶୁଦ୍ଧା ସେଠାରେ ଅଭିମତ ଅଧ୍ୟୟନଦ୍ୱାରା ପ୍ରଫୁଲ୍ଲଚିତ୍ତରେ କାଳଯାପନ କରୁଥିଲେ ।

ତାହାଙ୍କର ପତ୍ନୀ ତଦୀୟ ଉଦ୍ଧାର ସାଧନରେ ଏକାନ୍ତ ଅଧ୍ୟବସାୟିନୀ ଥିଲେ । ଯେମାନେ "ଅସଦଭିସନ୍ଧି ଚିତ୍ତରେ ତାହାଙ୍କୁ ପତି ସମଭିବ୍ୟାହାରରେ କାରାଗାରରେ ବାସ କରିବାର ଅନୁମତି ଦେଇଥିଲେ; ବୋଧହୁଏ ପତିପ୍ରାଣା ରମଣୀ ବୁଦ୍ଧି କୌଶଳ ଓ ଉଦ୍ୟୋଗରେ କି ପର୍ଯ୍ୟନ୍ତ କାର୍ଯ୍ୟସାଧନ ହୋଇପାରେ ସେମାନେ ତଦ୍ୱିଷୟରେ ବିଶେଷଜ୍ଞ ଥିଲେ ନାହିଁ । ସେ ଏକ ମୂହୂର୍ତ୍ତ କାରଣ ଶୁଦ୍ଧା ଏହି ଅଭିଳଷିତ ସମାଧାନ ଉପାୟ ଚିନ୍ତାରେ ବିରତ ହୋଇ ନାହାନ୍ତି ଏବଂ ଯଦ୍ଦ୍ୱାରା ଏତଦ୍ ବିଷୟର ଆନୁକୂଲ୍ୟ ହେବାର ସମ୍ଭାବନ ଏତାଦୃଶ ବ୍ୟାପାର ଉପସ୍ଥିତ ହୋଇଲେ ତଦ୍ୱିଷୟରେ କୌଣସି କ୍ରମେ ଉପେକ୍ଷା କରନ୍ତି ନାହିଁ ।

ଗ୍ରୋଶ୍ୟସ ସନ୍ନିହିତ ନଗରବର୍ତ୍ତୀ ବନ୍ଧୁବର୍ଗ ନିକଟରୁ ପାଠାର୍ଥ ପୁସ୍ତକ ଆଣିବାର ଅନୁମତି ପାଇଥିଲେ । ପାଠ ସମାପ୍ତ ହେଲେ ସେହି ପୁସ୍ତକ ସକଳ କରଣ୍ଡିକ ମଧ୍ୟଗତ ହୋଇ ପ୍ରେରିତ ହୁଏ । ସେହି ସମଭିବ୍ୟାହାରେ ମଳିନ ବସ୍ତ୍ର ମଧ୍ୟ ପ୍ରକ୍ଷାଳନ ନିମନ୍ତେ ରଜକାଳୟକୁ ଯାଏ । ପ୍ରଥମତଃ ରକ୍ଷକମାନେ ତନ୍ନ ୨ କରି ଅନୁସନ୍ଧାନ କରୁଥିଲେ; କିନ୍ତୁ କୌଣସିଥର ସନ୍ଦେହୋଦ୍ବୋଧକ ବସ୍ତୁ ଦୃଷ୍ଟିଗୋଚର ନ ହେବାରୁ କ୍ରମେ ୨ ଶିଥିଳ ପ୍ରଯତ୍ନ କଲେ । ଗ୍ରୋଶ୍ୟସଙ୍କ ଜାୟା ରକ୍ଷକଗଣର କ୍ରମେ ୨ ଏହି ରୂପ ଅଯତ୍ନ ପ୍ରାଦୁର୍ଭାବ ଦେଖି, ସ୍ୱାମୀଙ୍କୁ ସେହି କରଣ୍ଡିକ ମଧ୍ୟଗତ କରି ସ୍ଥାନାନ୍ତରିତ କରିବାକୁ ମାନସ କଲେ । ବାୟୁ ପ୍ରବେଶ ନିମନ୍ତେ ସେଥିରେ କେତେଟା କଣା କଲେ; ଏବଂ ଗ୍ରୋଶ୍ୟସ ଏପ୍ରକାର ସ୍ଥାନ ମଧ୍ୟରେ ରୁଦ୍ଧ ହୋଇ କେତେ ସମୟ ପର୍ଯ୍ୟନ୍ତେ ଅକ୍ଳେଶରେ ରହି ପାରିବେ ଏହାମଧ୍ୟ ପରୀକ୍ଷା କଲେ । ଅନନ୍ତର ଦିନରେ ଦୁର୍ଗାଧ୍ୟକ୍ଷର ଅସନ୍ନିଧାନ ରୂପ ସୁଯୋଗ ଦେଖି ତାହାଙ୍କର ସହଧର୍ମିଣୀଙ୍କ ନିକଟକୁ ଯାଇ ନିବେଦନ କଲେ, ଅସ୍ମତ୍ସ୍ୱାମୀ ଅତ୍ୟନ୍ତ ଅଧ୍ୟୟନ-ଦ୍ୱାରା ଶରୀରପାତ କରୁଅଛନ୍ତି; "ଅତଏବ ଆମ୍ଭେ ଋଣୀକୃତ ସକଳ ପୁସ୍ତକ ଏକାବେଳେ ଫେରାଇ ଦେବାକୁ ଇଚ୍ଛା କରୁଁ ।

ଏହି ରୂପ ପ୍ରାର୍ଥନାଦ୍ୱାରା ତାହାଙ୍କର ସମ୍ମତି ଲାଭ ହେଲେ, ନିରୂପିତ ସମୟରେ ଗ୍ରୋଶିୟସ କରଣ୍ଡିକ ମଧ୍ୟରେ ପ୍ରବେଶ ହେଲେ; ଅନନ୍ତର ଦୁଇଜଣ ସୈନିକ ଅଧିରୋହଣୀଦ୍ୱାରା ଅତିକଷ୍ଟରେ କରଣ୍ଡିକ ଅବତୀର୍ଣ୍ଣ କଲେ । ସେହି କରଣ୍ଡିକ ସମଧିକ ଭାରକ୍ରାନ୍ତ ଦେଖି ସେମାନଙ୍କର ଅନ୍ୟତର ପରିହାସ ପୂର୍ବକ କହିଲା ଭାଇ ! ଏହା ମଧ୍ୟରେ ଅବଶ୍ୟ ଏକ ଆର୍ମିଣୀୟ ଅଛି । ଗ୍ରୋଶିୟସର ଜାୟା ଅବ୍ୟାକୁଳ ଚିତ୍ତରେ ଉତ୍ତର କଲେ, ହଁ ଇହା ମଧ୍ୟରେ କେତେ ଗୋଟିଏ ଆର୍ମିଣୀୟ ପୁସ୍ତକ ଅଛି ସତ୍ୟ । ଯାହା ହେଉ ସୈନିକ ପୁରୁଷ କରଣ୍ଡିକର ଅସମ୍ଭବ ଭାର ଦର୍ଶନେ ସଂଶୟାପନ୍ନ ଚିତ୍ତରେ ଆପଣାର ଅବଶ୍ୟ କର୍ତ୍ତବ୍ୟ ଅଧ୍ୟକ୍ଷ ଭାର୍ଯ୍ୟାର ଗୋଚର କରାଇଲା । କିନ୍ତୁ ସେ କହିଲେ ଏଥିରେ ଅଧିକସଂଖ୍ୟକ ପୁସ୍ତକ ଅଛି ସେଥିପାଇଁ ଏତେ ଭାରି ହୋଇଅଛି । ଗ୍ରୋଶିୟସର ଶାରୀରିକ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ତାହାଙ୍କର ଜାୟା ଏକାବେଳେ ସକଳ ପୁସ୍ତକ ଫେରାଇ ଦେବାର ଅନୁମତି ପାଇ ଅଛନ୍ତି ।

ଏକ ଦାସୀ ଏହି ଗୋପନୀୟ ପରାମର୍ଶ ମଧ୍ୟରେ ଥିଲା, ସେ ସେହି କରଣ୍ଡିକ ସଙ୍ଗେ ୨ ଗମନ କଲା । ତାହା ଏକ ବନ୍ଧୁ ଆଳୟକୁ ନୀତ ହେଲେ ଗ୍ରୋଶିୟସ ଅବ୍ୟାହତ ଶରୀରରେ ତନ୍ମଧ୍ୟରୁ ନିର୍ଗତ ହୋଇ ଓ ରାଜମିସ୍ତ୍ରୀ ବେଶ ଧରି ହସ୍ତେ ଏକ କରଣୀ ଧାରଣ ପୂର୍ବକ ଆପଣ ମଧ୍ୟ ଦେଇ ଗମନ କରି ନୌକାରୋହଣ କଲେ । ଏବଂ ତଦ୍ଦ୍ୱାରା ବ୍ରାବଣ୍ଟରେ ଉପସ୍ଥିତ ହୋଇ ସେଠାରୁ ଶକଟ ଯାନରେ ଏଣ୍ଟୱେର୍ପ ପ୍ରସ୍ଥାନ କଲେ । ୧୬୨୧ ସାଲର ମାର୍ଚ୍ଚ ମାସରେ ଏହି ଶୁଭ ବ୍ୟାପାର ନିର୍ବାହ ହୋଇଥିଲା । ଗ୍ରୋଶିୟସ ବିପକ୍ଷବର୍ଗର କ୍ଷମତାର ବହିର୍ଗତ ହୋଇ ଅଛନ୍ତି; ଯେତେ ଦିନ ପର୍ଯ୍ୟନ୍ତେ ତାହାଙ୍କ ରମଣୀର ଦୃଢ଼ ବିଶ୍ୱାସ ନ ଜନ୍ମିଲା ତେତେ ଦିନ ପର୍ଯ୍ୟନ୍ତେ ସମସ୍ତଙ୍କଠାରେ କହିଲେ ଆମ୍ଭର ସ୍ୱାମୀ ଅତ୍ୟନ୍ତ ରୋଗାଭିଭୂତ ହୋଇ ଶଯ୍ୟାଗତ ଅଛନ୍ତି ।

କିଛି ଦିନ ପରେ ଏହି ବିଷୟ ପ୍ରକାଶ ହେଲେ ସେ ପୂର୍ବାପର ସକଳ ବିଷୟ ସ୍ୱୀକାର କଲେ । ତେତେବେଳେ ଦୁର୍ଗାଧ୍ୟକ୍ଷ କ୍ରୋଧରେ ଅଧିପର ହୋଇ, ତାହାଙ୍କୁ ଦୃଢରୂପେ ରୁଦ୍ଧ କରି ଯତ୍ପରୋନାସ୍ତି କ୍ଳେଶ ଦେବାକୁ ଲାଗିଲେ । ପରିଶେଷରେ ସେ ରାଜପୁରୁଷମାନଙ୍କର ନିକଟରେ ଆବେଦନ କରି ମୁକ୍ତ ପାଇଲେ । ଥୋକାଏ ପାମର ପ୍ରସ୍ତାବ କରିଥିଲେ ତାହାଙ୍କୁ ଯାବଜ୍ଜୀବନ କାରାରୁଦ୍ଧ କରା କର୍ତ୍ତବ୍ୟ କିନ୍ତୁ ଅନେକ ଲୋକର ଅନ୍ତଃକରଣରେ କରୁଣାସଞ୍ଚାର ହେବାରୁ ତାହା ଅଗ୍ରାହ୍ୟ ହେଲା । ଆଉ ସମସ୍ତେ ତାହାଙ୍କର ବୁଦ୍ଧି କୌଶଳ ସହିଷ୍ଣୁତା ଓ ପତିପରାୟଣତା ଦେଖି ଭୂୟସୀ ପ୍ରଶଂସା କଲେ ।

ଗ୍ରୋଶସ ଫ୍ରାନ୍ସ ଦେଶକୁ ଯାଇ ନିର୍ଭୟ ଓ ନିଶ୍ଚିନ୍ତ ହୋଇ ବାସ କରିବାକୁ ଲଗିଲେ । କିଛି ଦିନ ବାଦ ତାହାଙ୍କର କଳତ୍ର ମଧ୍ୟ ସେ ସ୍ଥାନରେ ଉପସ୍ଥିତ ହେଲେ । ପାରିସ ରାଜଧାନୀରେ ବାସ କରିବା ବହୁ ବ[ୟ୍ୟ]ସାଧ୍ୟ; ଅତଏବ ଗ୍ରୋଶସ ପ୍ରଥମରେ କିଛି ଦିନ ଅର୍ଥର ଅସଙ୍ଗତି ନିବନ୍ଧନ ଅତ୍ୟନ୍ତ କ୍ଲେଶ ପାଇଥିଲେ । ପରେ ଫ୍ରାନ୍ସର ଅଧିପତି ତାହାଙ୍କର ବୃତ୍ତି ନିର୍ଦ୍ଧାରିତ କରି ଦେଲେ, ସେ ଅବିଶ୍ରାନ୍ତ ଗ୍ରନ୍ଥରଚନା କରିବାକୁ ଲଗିଲେ, ତାହାଙ୍କର ଯଶଃଶଶଧର କିରଣ ଇୟୁରୋପର ସର୍ବତ୍ର ପ୍ରକାଶ ପାଇବାକୁ ଲଗିଲା ।

ଫ୍ରାନ୍ସର ପ୍ରଧାନମନ୍ତ୍ରୀ କାର୍ଡ଼ିନାଲ, ଗ୍ରୋଶସଙ୍କୁ କେବଳ ଫ୍ରାନ୍ସର ହିତ ଚିନ୍ତା ବିଷୟରେ ବ୍ୟାସକ୍ତ ହେବା ନିମନ୍ତେ ଅନୁରୋଧ କଲେ । କିନ୍ତୁ ଗ୍ରୋଶସ ପ୍ରାକୃତ ଲୋକପରି ତାହାଙ୍କର ସକଳ ପ୍ରସ୍ତାବରେ ଅସମ୍ମତ ହେବାରୁ, ସେ ତାହାଙ୍କୁ ଅଧୀନତା ନିବନ୍ଧନ ଅନେକ କ୍ଲେଶ ଦେଲେ । ଗ୍ରୋଶସ ଏହି ରୂପେ ନିତାନ୍ତ ହତାଦର ହୋଇ ସ୍ୱଦେଶକୁ ପ୍ରତ୍ୟାଗମନ ନିମନ୍ତେ ଅତ୍ୟନ୍ତ ଉତ୍ସୁକ ହେଲେ । ତଦନୁସାରେ ୧୬୨୭ ସାଲରେ ତାହାଙ୍କ ସହଧର୍ମିଣୀ ଓ ବନ୍ଧୁବର୍ଗ ସହିତ ପରାମର୍ଶ କରି କର୍ତ୍ତବ୍ୟାକର୍ତ୍ତବ୍ୟ ସ୍ଥିର କରଣାର୍ଥ ହଲଣ୍ଡ ପ୍ରସ୍ଥାନ କଲେ ।

ଗ୍ରୋଶସ ପ୍ରତ୍ୟାଗମନ ସମୟରେ ପ୍ରାଡ୍‌ବିବାକମାନଙ୍କର ଅନୁମତି ଗ୍ରହଣ କରି ପାରିଲେ ନାହିଁ । କିନ୍ତୁ ତେତେବେଳେ ଦଣ୍ଡନୀତି ବିଷୟରେ ଯେ ନିୟମ ପରିବର୍ତ୍ତ[ନ] ହୋଇଥିଲା ତାହା ଉପରେ ନିର୍ଭର କରି, ସ୍ୱୀୟ ଜାୟାର ଉପଦେଶାନୁସାରେ ସାହସ ପୂର୍ବକ ରଟରଡ଼ମ ନଗରରେ ଉପସ୍ଥିତ ହେଲେ । ଯେତେବେଳେ ତାଙ୍କ ନାମରେ ବିଚାରାଳୟରେ ଅଭିଯୋଗ ଉପସ୍ଥିତ ହେଲା ତେତେବେଳେ ସେ କୌଣସି ପ୍ରକାରେ ଅପରାଧ ସ୍ୱୀକାର ବା କ୍ଷମା ପ୍ରାର୍ଥନା କଲେ ନାହିଁ । ବିଶେଷରେ ଏମନ୍ତ ଦୃଢ଼ରୂପେ ଆତ୍ମପକ୍ଷ ରକ୍ଷା କରିଥିଲେ ଯେ ତାହାଙ୍କର ବିପକ୍ଷମାନେ ଅପଦସ୍ଥ ଓ ଅବମାନିତ ହେଲେ; ଅତଏବ ସେମାନେ ତେତେବେଳ ପର୍ଯ୍ୟନ୍ତେ ତାହାଙ୍କ ପ୍ରତି ଶତ୍ରୁତାଚରଣ କରିଥିଲେ । ଥୋକାଏ ଲୋକ ତାହାଙ୍କର ପ୍ରତି ଆନୁକୂଲ୍ୟ ପ୍ରଦର୍ଶନ କରୁଥିଲେ, କିନ୍ତୁ ମନ୍ତ୍ରୀମାନେ ଏହି ରୂପ ଘୋଷଣା କରି ଦେଲେ ଯେ ଲୋକ ଗ୍ରୋଶସଙ୍କୁ ଧରି କରି ଦେବ ସେ ଉପଯୁକ୍ତ ପୁରସ୍କାର ପ୍ରାପ୍ତ ହେବ । ଗ୍ରୋଶସର ଜନ୍ମଭୂମି ବୋଲି ଯେ ଦେଶର ମୁଖ ଉଜ୍ଜ୍ୱଳ ହୋଇଅଛି ସେହି ଦେଶର ଲୋକମାନେ ତାହାଙ୍କ ପ୍ରତି ଏପରି ନୃଶଂସ ବ୍ୟବହାର କରିଥିଲେ ।

ସେ ହଲଣ୍ଡ ପରିତ୍ୟାଗ କରି, ହମ୍ବର୍ଗ ନଗରରେ ଉପସ୍ଥିତ ହୋଇ ସେ ସ୍ଥାନରେ ଦୁଇ ବରଷ ଅବସ୍ଥିତ କଲେ । ସେହିସ୍ଥାନରେ ଅବସ୍ଥାନ ସମୟରେ

ସୁଇଡ଼େନେଶ୍ୱରୀ ଝୀଷ୍ଟିୟାନା ଅଧିକାରରେ ବିଷୟ କର୍ମ ସ୍ୱୀକାର କରିବାକୁ ରାଣୀ ତାହାଙ୍କୁ ଫ୍ରାନ୍ସର ରାଜସଭାକୁ ଦୌତ୍ୟ କାର୍ଯ୍ୟରେ ନିଯୁକ୍ତ କରି ପଠାଇଲେ । ସେ ସେଠାରେ ଓ ସେହି ପଦରେ ୧୦ ବରଷ ପର୍ଯ୍ୟନ୍ତେ ରହିଲେ । ସେ ସେହି ସମୟରେ କେତେ ଖଣ୍ଡ ଉତ୍କୃଷ୍ଟ ଗ୍ରନ୍ଥ ରଚନା କରିଥିଲେ । ସେ ସେହି ସମୟରେ କୌଣସି କାରଣ ହେତୁରୁ ଦୌତ୍ୟ ପଦ ଦୁରୂହ ଓ କଷ୍ଟପ୍ରଦ ବୋଧ ହେବାରୁ, ବିରକ୍ତ ହୋଇ କର୍ମ ପରିତ୍ୟାଗ ପ୍ରାର୍ଥନାରେ ଆବେଦନ କଲେ, ତଦନୁସାରେ ତାହାଙ୍କର ପ୍ରାର୍ଥନା ଗ୍ରାହ୍ୟ ହେଲା । ସୁଇଡେନ ପ୍ରତ୍ୟାଗମନ ସମୟେ ହଲଣ୍ଡରେ ଉପସ୍ଥିତ ହେଲେ । ସ୍ୱଦେଶୀୟ ଲୋକମାନେ ପୂର୍ବେ ତାହାଙ୍କର ପ୍ରତି ଅତ୍ୟନ୍ତ କୃତଘ୍ନତା ବ୍ୟବହାର କରିଥିଲେ, ମାତ୍ର ଏତେବେଳେ ବିଶିଷ୍ଟ ରୂପ ସମାଦର କଲେ ।

ସେ ସୁଇଡ଼େନରେ ଉପସ୍ଥିତ ହୋଇ ଝୀଷ୍ଟିୟାନାକୁ ସମସ୍ତ କାଗଜପତ୍ର ବୁଝାଇ ଦେଇ, ଲୁବେକ ପ୍ରତ୍ୟାଗମନରେ ପ୍ରବୃତ୍ତ ହେଲେ କିନ୍ତୁ ପଥମଧ୍ୟରେ ଅତ୍ୟନ୍ତ ଦୁର୍ଯ୍ୟୋଗ ହେବାରୁ ଫେରି ଆସିଲେ । ପରିଶେଷେ ନିତାନ୍ତ ଅଧୈର୍ଯ୍ୟ ହୋଇ ତୁଫାନ ବରଷା ନ ମାନି ଏକ ଅନାବୃତ ଶକଟରେ ଆରୋହଣ କରି ଗମନ କଲେ । ଏହି ଅବିମୃଷ୍ୟକାରିତା ଦୋଷରେ ତାହାଙ୍କର ଆୟୁ ଶେଷ ହେଲା । ରଷ୍ଟକ୍ ପର୍ଯ୍ୟନ୍ତେ ଗମନ କରି ତାହାଙ୍କୁ ବିରତ ହେବାକୁ ହେଲା ଏବଂ ସେହି ସନରେ ୧୬୪୫ ସାଲ ଆଗଷ୍ଟ ମାସ ୧୮ ତାରିଖରେ ଷାଠିଏ ବରଷ ବୟଃକ୍ରମ ସମୟରେ ଛ ପୁତ୍ର ମଧ୍ୟରୁ ଚାରି ତନୟ ସହିତ ପ୍ରିୟତମା ପତ୍ନୀକୁ ରଖି ଅକସ୍ମାତ୍ କାଳଗ୍ରାସରେ ପଡ଼ିଲେ ।

ଗ୍ରୋଶ୍ୟସ ନାନା ବିଷୟରେ ନାନା ଗ୍ରନ୍ଥ ରଚନା କରି ଅଛନ୍ତି । ସମସ୍ତେ ସ୍ୱୀକାର କରନ୍ତି, ତଦୀୟ ପ୍ରଣୀତ ଗ୍ରନ୍ଥଦ୍ୱାରା ବିଜ୍ଞାନ ଶାସ୍ତ୍ରର ସୁଚାରୁ ରୂପ ଅନୁଶୀଳନର ପଥ ପରିଷ୍କୃତ ହୋଇଅଛି । ତାହାଙ୍କ ସନ୍ଦର୍ଭ ସକଳ ମଧ୍ୟରେ ଅଧିକାଂଶ ନିରବଚ୍ଛିନ୍ନ ଶବ୍ଦବିଦ୍ୟାସମ୍ବନ୍ଧ ଅର୍ଥାତ୍ ଗ୍ରୀକ ଲାଟିନ ଭାଷାର ଜ୍ଞାନସାପେକ୍ଷ; ସୁତରାଂ ତତ୍ସମୂହ ଏତେବେଳେ ଅକର୍ମଣ୍ୟ ହୋଇଅଛି; ଏବଂ ସେପରି ହେବା ମଧ୍ୟ ଅନ୍ୟାର୍ଯ୍ୟ ନୁହେ । ଏବଂ ସେହି କାରଣ ହେତୁରୁ ତାହାଙ୍କର ଆଲଙ୍କାରିକ ଗ୍ରନ୍ଥ ସକଳ ମଧ୍ୟ ନିତାନ୍ତ ଉପେକ୍ଷିତ ହୋଇଅଛି । ସେ ନୈସର୍ଗିକ ଓ ଜାତୀୟ ବିଧାନ ବିଷୟ "ସନ୍ଧି ବିଗ୍ରହ ବିଧି" ନାମକ ଯେ ମହାଗ୍ରନ୍ଥ ଲାଟିନ ଭାଷାରେ ରଚନା କରିଅଛନ୍ତି, ଅଧୁନାତନ ସମୟରେ କେବଳ ତଦ୍ଦ୍ୱାରା ତାହାଙ୍କର କୀର୍ତ୍ତି ଦେଦୀପ୍ୟମାନ ରହିଅଛି । ସେହି ଉତ୍କୃଷ୍ଟ ଗ୍ରନ୍ଥଦ୍ୱାରା ଇଉରୋପୀୟ ଅଧୁନାତନ ବିଧାନଶାସ୍ତ୍ରର ବିଶିଷ୍ଟ ରୂପ ଶ୍ରୀବୃଦ୍ଧି ଲାଭ ହୋଇଅଛି ।



# ଲିନୟସ

ସୁଇଡ଼େନ ରାଜ୍ୟର ଅନ୍ତର୍ଗତ ସ୍ମାଲଣ୍ଡ ପ୍ରଦେଶରେ ରାସଲଟ ନାମଧେୟ ଏକ ଗ୍ରାମ ଅଛି । ଲିନ୍ନୟସ ୧୭୫୭ ସାଲରେ ସେଠାରେ ଜନ୍ମଗ୍ରହଣ କଲେ । ତାହାଙ୍କର ପିତା ମାତା ଅତି ଦୀନ ଗ୍ରାମପୁରୋହିତ ଥିଲେ । ଲିନ୍ନୟସ ଅତ୍ୟନ୍ତ ଦରିଦ୍ର ହୋଇ ମଧ୍ୟ ଅଲୋକସାମାନ୍ୟ ବୁଦ୍ଧିଶକ୍ତି, ମନୋହାରିତାଶୀଳତା ଓ ଅବିଚଳିତ ଅଧ୍ୟବସାୟ ପ୍ରଭାବଦ୍ୱାରା ବିଜ୍ଞାନଶାସ୍ତ୍ର ଓ ଅନ୍ୟାନ୍ୟ ବିଦ୍ୟା ବିଷୟରେ ମନୁଷ୍ୟ ସମାଜରେ ଅଗ୍ରଗଣ୍ୟ ହୋଇଅଛନ୍ତି । ଅତି ଶୈଶବ କାଳରେ ତାହାଙ୍କର ପ୍ରକୃତିର ଅନୁଶୀଳନରେ ପ୍ରଗାଢ଼ ଅନୁରାଗ ଜନ୍ମେ; ତନ୍ମଧ୍ୟରେ ଉଦ୍‌ଭିଦବିଦ୍ୟା ଆଲୋଚନାରେ ସେ ସମଧିକ ଅନୁରକ୍ତ ଥିଲେ । ବୋଧ ହୁଏ ଇ ପିଲା କାଳରେ କ୍ଷେତ୍ରମଧ୍ୟରେ ପରିଭ୍ରମଣ ଓ ପ୍ରକୃତି ରୂପ ପ୍ରକାଣ୍ଡ ପୁସ୍ତକ ଅଧ୍ୟୟନରେ ସମଧିକ ଅନୁରକ୍ତ ଥିଲେ । ପାଠଶାଳାର ନିରୂପିତ ପୁସ୍ତକ ପାଠରେ ତାଙ୍କର ମନୋନିବେଶ କରୁନ୍ତି ନାହିଁ ତେଣୁ ତାହାଙ୍କର ପ୍ରଥମ ଶିକ୍ଷକମାନେ ତଦୀୟ ଅନାବେଶ ଦର୍ଶନରେ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇଥିଲେ । ତାହାଙ୍କ ପିତା ସେମାନଙ୍କ ମୁଖରୁ ପାଠରେ ଅମନୋଯୋଗିତା ଶ୍ରବଣ କରି ବିରକ୍ତ ହୋଇ ତାହାଙ୍କୁ ଉପାନତକାରର ବ୍ୟବସାୟରେ ନିଯୁକ୍ତ କଲେ । କିନ୍ତୁ ବନ୍ଧୁବର୍ଗର ସବିଶେଷ ଅନୁରୋଧ ଓ ଲିନ୍ନୟସର ସାତିଶୟ ବିନୟାଧୀନ ହୋଇ ଚିକିତ୍ସା ବିଦ୍ୟା ଶିକ୍ଷା ନିମନ୍ତେ ଅନୁମତି ପ୍ରଦାନ କଲେ । ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ସମୟରେ, ନା ପୁସ୍ତକ, ନା ପରିଧେୟ, ନା ଆହାରୀୟ ସାମଗ୍ରୀ କିଛିହିଁ ସଙ୍ଗତି ଥିଲା ନାହିଁ । ଅଧିକନ୍ତୁ ଉଦ୍‌ଭିଦବିଦ୍ୟା ଅନୁଶୀଳନ ସମାଧାନାର୍ଥ କ୍ଷେତ୍ରମଧ୍ୟରେ ଭ୍ରମଣ କରିବା ନିମନ୍ତେ ଛିଡ଼ା ଚର୍ମପାଦୁକାରେ ବଲ୍‌କଲର ତାଳି ଦେବାକୁ ହୁଏ । ଏମନ୍ତ ଦୁରବସ୍ଥାରେ ମଧ୍ୟ ସେ ପ୍ରତିପତ୍ତି ଲାଭ କରିବାକୁ ଲାଗିଲେ ।

*

ଲିନିୟସ ଯୌବନ ଦଶାରେ ଅବତୀର୍ଣ୍ଣ ହୋଇଅଛନ୍ତି ଏମନ୍ତ ସମୟରେ ଅପ୍‌ସାଲ ବୈଜ୍ଞାନିକ ବିଦ୍ୟାଳୟର ଅଧ୍ୟକ୍ଷମାନେ ତାହାର ଏହି ଅଭିପ୍ରାୟରେ ଲାପ୍‌ଲାଣ୍ଡର ଅତି ଭୀଷଣ ଭୂଭାଗକୁ ପଠାଇବା ନିମନ୍ତେ ସ୍ଥିର କଲେ ଯେ, ସେ ତତ୍ରତ୍ୟ ନିସର୍ଗୋତ୍ପନ୍ନ ବସ୍ତୁ ସକଳର ତତ୍ତ୍ୱ ନିର୍ଦ୍ଧାରଣ କରି ଆଣିବେ । ଲିନିୟସ ମଧ୍ୟ ଅନୁରାଗ ଓ ବ୍ୟଗ୍ରତା ପ୍ରଦର୍ଶନ ପୂର୍ବକ ପାଥେୟ ମାତ୍ର ପର୍ଯ୍ୟାପ୍ତ ବେତନରେ ଉକ୍ତ ବହୁ ପରିଶ୍ରମ ସାଧ୍ୟ ବ୍ୟାପାର ସମାଧାନ ନିମନ୍ତେ ସେ ପ୍ରାନ୍ତରକୁ ଗମନ କଲେ । ସେଠାରୁ ପ୍ରତ୍ୟାଗମନର ପର ଅପ୍‌ସାଲର ବିଶ୍ୱବିଦ୍ୟାଳୟରେ ଉଦ୍ଭିଦ ଓ ଧାତୁବିଦ୍ୟା ବିଷୟ ଉପଦେଶ ଦେବାକୁ ଆରମ୍ଭ କଲେ । ଉପଦେଷ୍ଟବ୍ୟ ବିଷୟରେ ସମ୍ପୂର୍ଣ୍ଣ ଅଧିକାର ଏବଂ ଉପଦେଶ ପ୍ରକୃତିର ଚମତ୍କାରିତ୍ୱ ଓ ଅଭିନବ ପ୍ରଯୁକ୍ତ ଚତୁର୍ଦ୍ଦିଗରୁ ଭୂରି ଭୂରି ଶ୍ରୋତା ସମାଗତ ହେଲେ ।

କିନ୍ତୁ ହୃଦୟୋନ୍ମୁଖୀ ପ୍ରତିଭା ନିତ୍ୟ ବିଦ୍ୱେଷିଣୀ ଈର୍ଷ୍ୟା ତାହାର ଅଭ୍ୟୁଦୟରୁ ଅତି ଶୀଘ୍ର ଉତ୍ପନ୍ନ କଲା । ଇହା ଉଦ୍‌ଘୋଷିତ ହେଲା ବିଶ୍ୱବିଦ୍ୟାଳୟର ନିୟମ ଅଛି କୌଣସି ଲୋକ ଅଗ୍ରେ ଉପାଧି ପ୍ରାପ୍ତ ନ ହେଲେ ସେ ସ୍ଥାନରେ ଉପଦେଶ ଦେବାକୁ ଅଧିକାରୀ ହୋଇ ପାରିବେ ନାହିଁ । ଦୁର୍ଭାଗ୍ୟକ୍ରମେ ଲିନିୟସର ବିଦ୍ୟାଳୟ ସମ୍ପର୍କୀୟ କୌଣସି ପ୍ରଶଂସା ପତ୍ରାଦି ଥିଲା ନାହିଁ । ଏକଥା ଉପଲକ୍ଷ୍ୟ କରି ଚିକିତ୍ସା ଶାସ୍ତ୍ରର ଅଧ୍ୟାପକ ଡାକ୍ତର ରୋଜେନର ସହିତ ତାହାଙ୍କର ଘୋରତର ବିବାଦ ଉପସ୍ଥିତ ହେଲା । କିନ୍ତୁ ବନ୍ଧୁବର୍ଗମାନେ ମଧ୍ୟବର୍ତ୍ତୀ ହୋଇ ତାହାଙ୍କୁ ସାନ୍ତ୍ୱନା କଲେ । ଅନନ୍ତର ସେ ଥୋକାଏ ଶିଷ୍ୟ ସହିତ ଅବିଳମ୍ବେ ଅପ୍‌ଶାଲରୁ ପ୍ରସ୍ଥାନ କଲେ; ଏବଂ ଧାତୁ ଓ ଉଦ୍ଭିଦର ତତ୍ତ୍ୱାନୁସନ୍ଧାନ ନିମନ୍ତେ ଡାଲିକର୍ଲିୟା ପ୍ରଦେଶରେ ପର୍ଯ୍ୟଟନ କରିବାକୁ ଲାଗିଲେ ।

ଲିନିୟସ ଡାଲିକର୍ଲିୟା ନଗର ରାଜଧାନୀ ଫାହ୍ଲୁନ ନଗରେ ଉପସ୍ଥିତ ହୋଇ, ସେ ସ୍ଥାନର ପ୍ରଧାନ ଚିକିତ୍ସକ ଡାକ୍ତର ମୋରିୟସ ନିକଟରେ ଶିଷ୍ୟ ରୂପେ ପ୍ରତିପନ୍ନ ହୋଇଲେ । ଉକ୍ତ ଡାକ୍ତର ଅତ୍ୟନ୍ତ ଦୟାବାନ ଓ ବିଦ୍ୱାନ ଥିଲେ ତାହାଙ୍କର ଗୋଟିଏ ବୃକ୍ଷବାଟିକା ଥିଲା, ସେଥିରେ କେତେ ଗୋଟି [ଓଁ]ଏ ତରୁ, ଲତା ଓ ପୁଷ୍ପ ଥିଲା ।

ଲିନିୟସ ତାହା ଦେଖି ଅପରିସୀମ ଆନନ୍ଦିତ ହେଲେ । କିନ୍ତୁ ତାହାଙ୍କର ସମଧିକ ସୌନ୍ଦର୍ଯ୍ୟାଧାର ଆଉ ଗୋଟିଏ ରମଣୀୟ ପୁଷ୍ପ ଥିଲା । ଲିନିୟସ କୌଣସି ଉଦ୍ୟାନ ବା କ୍ଷେତ୍ରରେ ତାଦୃଶ ମନୋହର କୁସୁମ ଅବଲୋକନ କରି ନାହାନ୍ତି । ଫଳେ ଆମ୍ଭମାନଙ୍କର ନବୀନ ଉଦ୍ଭିଦବେତ୍ତା ଡାକ୍ତର ମୋରିୟସର ଜ୍ୟେଷ୍ଠା

ଆତ୍ମଜା ପ୍ରତି ସାତିଶୟ ଅନୁରକ୍ତ ହୋଇଥିଲେ । ଏବଂ ସେହି ନବୀନା କାମିନୀର ମଧ୍ୟ ଅନ୍ତଃକରଣରେ ପ୍ରଗାଢ଼ ଅନୁରାଗ ସଞ୍ଚାରିତ ହେଲା । ତେତେବେଳେ ଲିନିୟସ ଅନ୍ତଃକରଣର ଅନୁରାଗ ଓ ବ୍ୟଗ୍ରତା ପରତନ୍ତ୍ର ହୋଇ ନବପ୍ରଣୟିନୀର ଜନକଙ୍କ ସନ୍ନିଧାନରେ ପାଣିଗ୍ରହଣ ବିଷୟ ପ୍ରସ୍ତାବ କଲେ । ସୁଶୀଲ ଡାକ୍ତର ଏହି ନବୀନ ବିଦ୍ୱାନ ବାଗ୍ମୀ ଯୁବା ଲୋକର ବ୍ୟବସାୟ ଓ ସରଳ ସ୍ୱଭାବ ଦର୍ଶନରେ ତାହାଙ୍କ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ଥିଲେ । ମାତ୍ର ଆପଣାର କନ୍ୟାକୁ ମଧ୍ୟ ଅତିଶୟ ସ୍ନେହ କରନ୍ତି; ଅତଏବ ବିଚାର କଲେ ଅଗ୍ର ପଶ୍ଚାତ୍ ନ ବୁଝି, ଏପରି ସହାୟ ସମ୍ପତ୍ତି ହୀନ ଓ କୌଣସି ପ୍ରକାର ନିୟମିତ ବ୍ୟବସାୟ ବା ବିଷୟ କର୍ମ ଶୂନ୍ୟ ଅନାଥ ଲୋକକୁ ଜାମାତା କଲେ କନ୍ୟାକୁ ଚିରଦୁଃଖିନୀ କରିହୁଏ । ଏହା ବିଚାର କରି ତାହାଙ୍କୁ ବିବାହ ବିଷୟରେ ଆଉ ତିନି ବରଷ ଅପେକ୍ଷା କରିବା ନିମନ୍ତେ ସମ୍ମତ କରି, ଚିକିତ୍ସାବିଦ୍ୟା ଅଧ୍ୟୟନାର୍ଥ ଦୃଢ଼ ରୂପେ ପରାମର୍ଶ ଦେଲେ ଏବଂ କହିଲେ ଏଥି ମଧ୍ୟରେ ଆମ୍ଭେ କନ୍ୟାକୁ ଆନ ଜଣକୁ ସମର୍ପଣ କରିବା ନାହିଁ; ଯଦି ତୁମ୍ଭେ ଏହି ସମୟ ମଧ୍ୟରେ କିଛି ସଂସ୍ଥାନ କରିପାର, ତାହା ହେଲେ ଆମ୍ଭେ, କ୍ଷଣକାଳ ଶୁଦ୍ଧା ବିଳମ୍ବ ନ କରି; ପ୍ରସନ୍ନ ଚିତ୍ତରେ ତୁମ୍ଭଙ୍କୁ କନ୍ୟାଦାନ କରିବୁଁ ।

ଏହାଠାରୁ ଆଉ କି ଉତ୍କୃଷ୍ଟ ପ୍ରସ୍ତାବ ହୋଇପାରେ । ଲିନିୟସ ସ୍ୱୀୟ ଜ୍ଞାନର ସହାୟତାଦ୍ୱାରା ପ୍ରୀତିପ୍ରସାରିତ ଚଞ୍ଚଳଚିତ୍ତକୁ ସ୍ଥିରୀଭୂତ କରି ପ୍ରଶଂସାପତ୍ର ପ୍ରାପ୍ତ୍ୟର୍ଥ ଲିଡ଼ନ ନଗରକୁ ପ୍ରସ୍ଥାନ କଲେ । ତାହାଙ୍କର ପ୍ରସ୍ଥାନର ପୂର୍ବ, କୁମାରୀ ମୋରିୟସ, ବହୁକାଳର ସଞ୍ଚିତ ବ୍ୟୟାବଶିଷ୍ଟ ଏକ ଶତ ମୁଦ୍ରା ଆଣି, ପ୍ରଣୟ-ବ୍ରତର ବରଣ ଓ ଅକୃତ୍ରିମ ଅନୁରାଗର ଦୃଢ଼ତର ପ୍ରମାଣ ସ୍ୱରୂପ, ତାହାଙ୍କର ଚରଣରେ ସମର୍ପଣ କଲେ । ସେ ତାହାଙ୍କର କରପଲ୍ଲବ ମର୍ଦ୍ଦନ ଓ ବ୍ୟଗ୍ର ଚିତ୍ତରେ ବାରମ୍ବାର ମୁଖଚୁମ୍ବନ କଲେ, ଏବଂ ଅପରିମେୟ ପ୍ରଣୟରସାସ୍ୱାଦରେ ପ୍ରଫୁଲ୍ଲ ଚିତ୍ତ ହୋଇ ଅନ୍ତଃକରଣ ମଧ୍ୟରେ ତାହାଙ୍କର ଅକୃତ୍ରିମ ଔଦାର୍ଯ୍ୟର ଭୂୟସୀ ପ୍ରଶଂସା କରୁଁ ୨ ବିଦାୟ ହେଲେ ।

ଆଉ ୨ ରସଜ୍ଞ ନାୟକମାନେ ଏମନ୍ତ ଅବସ୍ଥାରେ ମନମଧ୍ୟରେ କେତେ ପ୍ରକାର କଳ୍ପନା କରି ପ୍ରସ୍ଥାନ କରନ୍ତି; ଏବଂ କୌଣସି ୨ ସମୟେ ନାୟିକାର ଉଦ୍ଦେଶରେ ବିଚ୍ଛେଦବେଦନା ନିବେଦନ ଦୂତୀସ୍ୱରୂପ ରସବତୀ କବିତା ରଚନା କରନ୍ତି; ଏବଂ ଦୁର୍ବିସହ ବିରହାଧିକାର ହୋଇ ଅତ୍ୟନ୍ତ ବିଳାପ ଓ ପରିତାପ କରନ୍ତି କିନ୍ତୁ ଆମ୍ଭମାନଙ୍କର ଜ୍ଞାନୀ ନାୟକ ସେପରି ଥିଲେ ନାହିଁ । ସେ କେବଳ ଏହା ଭାବି ପ୍ରଫୁଲ୍ଲ ହୃଦୟରେ ପ୍ରସ୍ଥାନ କଲେ ଯେ, ଆହ୍ଲା ଏକ ଲୋକ ଆମ୍ଭଙ୍କୁ

ଯଥାର୍ଥରୂପେ ପ୍ରେମ କରେ ଓ ଆମ୍ଭର ବ୍ୟବସାୟର ପ୍ରଶଂସା କରେ, ଆମ୍ଭେ ମଧ୍ୟ ତାହାର ପ୍ରଶଂସା ଯୋଗ୍ୟପାତ୍ର ହେବା ନିମନ୍ତେ ବିଦ୍ୟା ଓ ଖ୍ୟାତି ଲାଭ ବିଷୟରେ ପ୍ରାଣପଣେ ଯତ୍ନ ଓ ପରିଶ୍ରମ କରିବାକୁ ତ୍ରୁଟି କରିବୁଁ ନାହିଁ ।

ଅନନ୍ତର ସେ ଲଣ୍ଡନ ନଗରେ ଉପସ୍ଥିତ ହୋଇ ସାତିଶୟ ଯତ୍ନ ଓ ପରିଶ୍ରମ ସହିତ ଅଧ୍ୟୟନ କରିବାକୁ ଲାଗିଲେ । ବୋରହେବ ଓ ଅନ୍ୟାନ୍ୟ ବିଜ୍ଞାନ-ଶାସ୍ତ୍ରଜ୍ଞ ବିଖ୍ୟାତ ପଣ୍ଡିତମାନଙ୍କ ନିକଟରେ ପ୍ରତିପନ୍ନ ହୋଇଲେ । ଏବଂ ଆମଷ୍ଟର୍ଡ଼ମ ଅଧ୍ୟକ୍ଷ ଦ୍ୱାରରେ ଚିକିତ୍ସକପଦେ ନିଯୁକ୍ତ ହେଲେ ।

ସେ ଦୁଇ ବରଷ ସେହି କର୍ମରେ ନିଯୁକ୍ତ ଥିଲେ । ସେହି ସମୟରେ ବହୁତର ପରିଶ୍ରମ ଓ ଯତ୍ନ ସହିତ କେତେ ଖଣ୍ଡ ଉତ୍କୃଷ୍ଟ ଗ୍ରନ୍ଥ ରଚନା କଲେ । ଅନନ୍ତର ଅଧିକ ବିଦ୍ୟାଲାଭ ପ୍ରତ୍ୟାଶାରେ ଇଂଲଣ୍ଡ ଓ ଅନ୍ୟାନ୍ୟ ଦେଶରେ ଭ୍ରମଣ କରିବାକୁ ଲାଗିଲେ । ବାସ୍ତବ ଏହି ସମୟରେ ସେ ବିଦ୍ୟୋପାର୍ଜ୍ଜନ ବିଷୟରେ ଯେପରି ଅସାଧାରଣ ପରିଶ୍ରମ ଓ ଯତ୍ନ କରିଥିଲେ ତାହା ଶୁଣିଲେ ଅସମ୍ଭବ ବୋଧ ହୁଅଇ । ପଦାର୍ଥ ବିଦ୍ୟାସଂକ୍ରାନ୍ତ ଏମନ୍ତ କୌଣସି ବିଷୟ ଥିଲା ନାହିଁ ଯେ ସେ ତାହାର ତତ୍ତ୍ୱାନୁସନ୍ଧାନରେ ପ୍ରବୃତ୍ତ ହୋଇ ନାହାନ୍ତି ଓ ତାହା ଶୃଙ୍ଖଳାବଦ୍ଧ କରି ନାହାନ୍ତି । କିନ୍ତୁ ଉଦ୍ଭିଦବିଦ୍ୟା ଅନୁଶୀଳନରେ ସମଧିକ ରତ ଥିଲେ । ଏବଂ ସେହି ବିଦ୍ୟାରେ ଏମନ୍ତ ପ୍ରତିଷ୍ଠାଲାଭ କରି ଅଛନ୍ତି ଯେ ତାହାର ଲୋପ ନ ହେଲେ ତାଙ୍କର ସେହି ପ୍ରତିଷ୍ଠା ଅପଚୟ ସମ୍ଭାବନା ନାହିଁ ।

୧୭୩୮ ସାଲରେ ଲିନିୟସ ଜିଛୁ ଧନ ପାଇଁ ପାରିସ ଯାତ୍ରା କଲେ । ସେହି ବରଷ ଶେଷରେ ସେ ସ୍ୱଦେଶ ପ୍ରତ୍ୟାଗମନ ପୂର୍ବକ ଷ୍ଟକହଲମ ନଗରରେ ଚିକିତ୍ସା ବ୍ୟବସାୟ ଆରମ୍ଭ କଲେ ।

ପ୍ରଥମରେ ସମସ୍ତେ ତାହାଙ୍କୁ ଅବଜ୍ଞା କରୁଥିଲେ; ମାତ୍ର ପରିଶେଷରେ ସୌଭାଗ୍ୟୋଦୟ ପ୍ରଯୁକ୍ତ ରାଜ୍ଞୀ ଇଲୟେନୋର କାସ ଚିକିତ୍ସାରେ କୃତକାର୍ଯ୍ୟ ହେବାରୁ ତଦବଧି ସେହି ନଗରରେ ଅତି ଆଦରଣୀୟ ଚିକିତ୍ସକ ହୋଇ ଉଠିଲେ । ସାମୁଦ୍ରିକ ସୈନ୍ୟ ସମ୍ପର୍କୀୟ ଚିକିତ୍ସକ ଏବଂ ରାଜକୀୟ ଉଦ୍ଭିଦବିତ ପଦରେ ନିଯୁକ୍ତ ହେଲେ । ଏହି ରୂପେ ନିୟମିତ ଆୟ ବ୍ୟବସ୍ଥାପିତ ହେଲେ । ପରିଷ୍ଟରାନୁରାଗ ୫ ବରଷ ବାଦ ସେହି ପ୍ରିୟତମା କାମିନୀର ପାଣିପୀଡ଼ନ କଲେ ।

କିୟଦ୍ଦିବସ ଗତ ହେଲେ ଲିନିୟସ ଅପ୍‌ଶାଲାର ବିଶ୍ୱବିଦ୍ୟାଳୟରେ ଆୟୁର୍ବେଦ ଅଧ୍ୟାପକ ପଦରେ ନିଯୁକ୍ତ ହେଲେ । ସେହି ସମୟରେ ତାହାଙ୍କର ପୂର୍ବ

ଶିସ୍ ସୋଦନ ଉକ୍ତ ବିଦ୍ୟାଳୟରେ ଉଦ୍ଭିଦବିଦ୍ୟାରେ ଅଧ୍ୟାପକ ପଦରେ ନିଯୁକ୍ତ ଥିବାରୁ ଦୁଇ ଜଣ ସଦ୍‌ଭାବ ପୂର୍ବକ ପରସ୍ପର ପଦ ବିନିମୟ କରି ନେଲେ । ଏହି ରୂପେ ଲିନାୟସ ଚିରପ୍ରାର୍ଥିତ ଉଦ୍ଭିଦ୍ ବିଦ୍ୟାଧ୍ୟାପକରେ ଅଧିରୂଢ଼ ହୋଇ ଅତି ସମ୍ମାନ ପୂର୍ବକ କ୍ରମାଗତ ସପ୍ତ ବିଂଶତି ବରଷ ଉକ୍ତ କାର୍ଯ୍ୟନିର୍ବାହ କଲେ ।

ଲିନାୟସ ଉଦ୍‌ଯୋଗରେ କେତେ ଜଣ ନବ୍ୟ ପଣ୍ଡିତ ନିସର୍ଗୋତ୍ପନ୍ନ ପଦାର୍ଥ ଗବେଷଣା ନିମନ୍ତେ ନାନା ଦେଶକୁ ପ୍ରେରିତ ହେଲେ । କାଲମ, ଅସବେକ ହସଲକ୍ୱିଷ୍ଟ ଓ ଲେଫ୍ଲ ଏହି କେତେ ଲୋକ ପ୍ରାକୃତ ଇତିବୃତ୍ତ ବିଷୟରେ ଯେ ନାନା ଆବିଷ୍କ୍ରିୟା କରି ଯାଇଅଛନ୍ତି, ପଦାର୍ଥବିଦ୍ୟା ଶ୍ରୀବୃଦ୍ଧି ବିଷୟରେ ତାହାଙ୍କର ଯେ ପ୍ରଗାଢ଼ ଅନୁରାଗ ଓ ଆଗ୍ରହାତିଶଯ୍ୟ ଥିଲା କେବଳ ତାହା ତହିଁର ମୂଳକାରଣ । ଡ୍ରଟନିଂହମ ନଗରରେ ସୁଇଡ଼େନର ରାଜମହିଷୀର ଯେ ଚିତ୍ରଶାଳିକା ଥିଲା, ସେ ତାହାର ସବିଶେଷ ବିବରଣ ପ୍ରସ୍ତୁତ କରିବା ନିମନ୍ତେ ଲିନାୟସ ଉପରେ ଭାରାର୍ପଣ କଲେ । ସେ ମଧ୍ୟ ତଦନୁସାରେ ସେ ସ୍ଥାନର ସକଳ ଶଙ୍ଖ ଶମ୍ବୁକାଦିର ବିଜ୍ଞାନଶାସ୍ତ୍ରାନୁଯାୟୀ ନି ଅଭିନବ ଶୃଙ୍ଖଳା ସ୍ଥାପନ କରିଲେ । ଅନୁମାନ ହେଉଅଛି ୧୭୫୧ ସାଲରେ "ଉଦ୍ଭିଦ ମୀମାଂସା" ନାମକ ଏକ ଗ୍ରନ୍ଥ ରଚନା କଲେ । ପରେ ୧୭୫୪ ସାଲରେ "ଉଦ୍ଭିଦ ସର୍ବଭାଗ" ନାମକ ଏକ ଗ୍ରନ୍ଥ ରଚନା ଓ ପ୍ରକାଶ କଲେ । ଏହି ଗ୍ରନ୍ଥରେ ସେ ସମୟ ବିଦିତ ନିଖିଳ ତରୁ ଗୁଲ୍ମ ସକଳର ସବିଶେଷ ବିବରଣ ଲେଖିତ ହୋଇଅଛି । ଏହି ଗ୍ରନ୍ଥ ଲିନାୟସର ଅନ୍ୟାନ୍ୟ ଗ୍ରନ୍ଥଠାରୁ ଉତ୍କୃଷ୍ଟ ଓ ଅବିନଶ୍ୱର ।

୧୭୫୩ ସାଲରେ ଏହି ବିଖ୍ୟାତ ପଣ୍ଡିତ "ନାଇଟ ଆବ୍ ଦ ପୋଲାର ଷ୍ଟାର" ଏହି ଉପାଧି ପ୍ରାପ୍ତ ହେଲେ । ଏହି ମହତୀ ମର୍ଯ୍ୟାଦା ତାହାଙ୍କ ପୂର୍ବରେ ଆଉ କେହି ପ୍ରାପ୍ତ ହୋଇ ଥିଲା ନାହିଁ । ୧୭୬୧ ସାଲରେ ସେ ସମ୍ଭ୍ରାନ୍ତ ଲୋକଶ୍ରେଣୀ ମଧ୍ୟରେ ପରିଗଣିତ ହେଲେ । ଅନ୍ୟାନ୍ୟ ଦେଶୀୟ ବୈଜ୍ଞାନିକ ସମାଜସମୂହ ଠାରୁ ଶୁଦ୍ଧା ବିଦ୍ୟା ସମ୍ବନ୍ଧୀୟ ନାନା ମର୍ଯ୍ୟାଦାସୂଚକ ଉପାଧି ପ୍ରାପ୍ତ ହେଲେ । ସେ କ୍ରମଶଃ ୨ ଐଶ୍ୱର୍ଯ୍ୟଶାଳୀ ହୋଇ ଅପ୍‌ସାଲ ସନ୍ନିହିତ ହାମାନ ନଗରରେ ଏକ ଅଟ୍ଟାଳିକା ଭୂମ୍ୟଧିକାର କ୍ରୟ କରି ଜୀବନର ଶେଷ ପନ୍ଦର ବରଷ ପ୍ରାୟ ସେ ସ୍ଥାନରେ ଅବସ୍ଥିତି କଲେ । ସେହି ସ୍ଥାନରେ ତାହାଙ୍କର ପ୍ରାକୃତ ଇତିବୃତ୍ତ ସମ୍ବନ୍ଧୀୟ ଏକ ଚିତ୍ରଶାଳିକା ଥିଲା, ସେଠାରେ ସେ ଉକ୍ତ ବିଦ୍ୟା ବିଷୟ ଉପଦେଶ ଦେବାକୁ ଲାଗିଲେ । ପୃଥିବୀର ନାନା ଭାଗସ୍ଥିତ ବିଜ୍ଞାନଶାସ୍ତ୍ରଜ୍ଞ ଲୋକ ଓ ଅଧ୍ୟାୟୀବର୍ଗର ସାହାଯ୍ୟରେ ତାହାଙ୍କର ସେହି ଚିତ୍ରଶାଳିକା ଦିନ ୨ ବୃଦ୍ଧି ହେବାକୁ ଲାଗିଲା ।

ଲିନାୟସ ଜୀବନର ଅଧିକାଂଶ କାଳ ଶାରୀରିକ ସୁସ୍ଥତା ଓ ପଟୁତା ଥିବାରୁ ଅତିଶୟ ଉତ୍ସାହ ଓ ପରିଶ୍ରମ ସ୍ୱୀକାର ପୂର୍ବକ ପଦାର୍ଥବିଦ୍ୟା ବିଷୟିଣୀ ଗବେଷଣା

ସମ୍ପାଦନରେ ସମର୍ଥ ଥିଲେ । କିନ୍ତୁ ୧୭୭୪ ସାଲ ମେ ମାସରେ ସହସା ଅପସ୍ମାର ରୋଗଦ୍ୱାରା ଆକ୍ରାନ୍ତ ହୋଇଲେ । ଅତଏବ ଅଧ୍ୟାପନା ସଂକ୍ରାନ୍ତ ଯେ ସକଳ କର୍ମରେ ଗୁରୁତର ପରିଶ୍ରମ ପ୍ରୟୋଜନ ତାହା ପରିତ୍ୟାଗ ପୂର୍ବକ ବିଦ୍ୟାନୁଶୀଳନରେ କ୍ଷାନ୍ତ ହେବାକୁ ହେଲା । ୧୭୭୮ ସାଲ ଜାନୁୟାରୀ ଏକାଦଶାହରେ ତାହାଙ୍କର ପ୍ରାଣତ୍ୟାଗ ହେଲା ।

ଲିନିୟସ ପୂର୍ବୋକ୍ତ ଗ୍ରନ୍ଥ ସକଳ ବ୍ୟତିରିକ୍ତ ଭେଷଜ ନିର୍ଣ୍ଣୟ ଏବଂ ରୋଗ-ନିର୍ଣ୍ଣୟ ବିଷୟରେ ଏକ ୨ ସୁପ୍ରଣାଳୀ ଗ୍ରନ୍ଥ ରଚନା କରିଥିଲେ । ସେ ଯେପରି ଅସାଧାରଣ ସାହସ, ପରିଶ୍ରମ ଓ କ୍ଷମତା ପ୍ରକାଶ କରିଥିଲେ ବିଜ୍ଞାନଶାସ୍ତ୍ର ସକଳର ଇତିହାସ ମଧ୍ୟରେ ଅତି ଅଳ୍ପ ଲୋକର ସେପରି ଦେଖାଯାଏ । ସେ ପଦାର୍ଥବିଦ୍ୟା ବିଷୟରେ ନାନା ପ୍ରଣାଳୀ ବ୍ୟବସ୍ଥାପିତ କରିଅଛନ୍ତି । କାଳକ୍ରମରେ ସେ ସକଳର ଅନ୍ୟଥା ହେବାର ବଡ଼ ଆଶ୍ଚର୍ଯ୍ୟ ନୁହଇ । ତଥାପି ତାହାଙ୍କଠାରୁ ଉକ୍ତ ବିଦ୍ୟାର ଯେରୂପ ମହାସ୍ତ୍ୟୀ ଶ୍ରୀବୃଦ୍ଧି ହୋଇଅଛି ତାହା ବାକ୍ୟପଥାତୀତ । ସୁଇଡ଼େନର ଅଧିପତି ଚତୁର୍ଥ ଗ୍ସ୍ଟେଭସ ୧୮୧୯ ସାଲରେ ଲିନିୟସ ଜନ୍ମ ଭୂମିରେ ତାହାଙ୍କର ଏକ କୀର୍ତ୍ତିସ୍ତମ୍ଭ ନିର୍ମାଣର ଆଦେଶ କଲେ ।

●

# ବଲଣ୍ଟିନ ଜାମିରେ ଡୁବାଲ

ଏତେବେଳେ ଆମ୍ଭେମାନେ ଡୁବାଲର ଜୀବନ ବୃତ୍ତାନ୍ତ ଲେଖିବାକୁ ପ୍ରବୃତ୍ତ ହେଲୁଁ । ଏହି ମହାନୁଭବ ୧୬୯୫ ସାଲେ ଫ୍ରାନସ ରାଜ୍ୟର ସାମ୍ପେନ ପ୍ରଦେଶର ଅନ୍ତର୍ବର୍ତ୍ତୀ ଆର୍ଥନ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାହାଙ୍କର ପିତା ଅତ୍ୟନ୍ତ ଦରିଦ୍ର ଥିଲେ, ସାମାନ୍ୟରୂପ କୃଷିକର୍ମ ଅବଲମ୍ବନ କରି ଯଥାକଥଞ୍ଚିତ୍, ପରିବାରର ଭରଣ ପୋଷଣ ନିର୍ବାହ କରନ୍ତି । ଡୁବାଲ ଯେତେବେଳେ ଦଶମ ବର୍ଷୀୟ ତେତେବେଳେ ତାହାଙ୍କର ପିତା ମାତା, ଆଉ କେତେ ଗୁଡ଼ିଏ ପୁତ୍ର କନ୍ୟା ରଖି ପରଲୋକଯାତ୍ରା କଲେ । ସେମାନଙ୍କର ପ୍ରତିପାଳନର କୌଣସି ଉପାୟ ଥିଲା ନାହିଁ; ସୁତରାଂ ଡୁବାଲ ଅତ୍ୟନ୍ତ ଦୁରବସ୍ଥାରେ ପଡ଼ିଲେ । କିନ୍ତୁ ଏହି ରୂପ ଦୁରବସ୍ଥାରେ ପଡ଼ି ଶୁଦ୍ଧା ମହୀୟସୀ ଉତ୍ସାହଶୀଳତା ଓ ଅବିଚଳିତ ଅଧ୍ୟବସାୟ ପ୍ରଭାବରେ ସମସ୍ତ ପ୍ରତିବନ୍ଧକ ଅତିକ୍ରମ କରି, ଅସାଧାରଣ ବିଦ୍ୟୋପାର୍ଜନଦ୍ୱାରା ମନୁଷ୍ୟମଣ୍ଡଳୀ ମଧ୍ୟରେ ଅଗ୍ରଗଣ୍ୟ ହୋଇଥିଲେ । ଦୁଇ ବରଷ ପରେ ସେ ଏକ କୃଷକଗୃହରେ ପେରୁଶାବକ ସକଳର ରକ୍ଷଣାବେକ୍ଷଣ କାରଣ ନିଯୁକ୍ତ ହେଲେ । କିନ୍ତୁ ବାଳକ ସ୍ୱଭାବ ସୁଲଭ କେତେକ ଗର୍ହିତ ଦୋଷରେ ଦୂଷିତ ହେବାରୁ ଅଳ୍ପ ଦିନ ମଧ୍ୟରେ ସେଠାରୁ ଦୂରୀକୃତ ହେଲେ । ପରିଶେଷେ ସେହି କାରଣ ପ୍ରଯୁକ୍ତ ଜନ୍ମଭୂମି ଶୁଦ୍ଧା ପରିତ୍ୟାଗ କରିବାକୁ ହେଲା ।

ଅନନ୍ତର ଡୁବାଲ ୧୭୦୯ ସାଲରେ ଦୁଃସହ ହେମନ୍ତ ଉପକ୍ରମରେ ଲୋରେନ ପ୍ରସ୍ଥାନ କଲେ । ବାଟମଧ୍ୟରେ ବିଷମ ବସନ୍ତ ରୋଗରେ ଆକ୍ରାନ୍ତ ହେଲେ । ସେହି ସମୟରେ ଯଦି ଏକ କୃଷକର ଆଶ୍ରୟ ନ ପାଇ ଥାଆନ୍ତେ ତେବେ ସେ ଅକାଳ କାଳଗ୍ରାସରେ ପଡ଼ିବାର କୌଣସି ଅସମ୍ଭାବନା ଥିଲା ନାହିଁ । କିନ୍ତୁ ଭାଗ୍ୟକ୍ରମରେ ସେ ଲୋକ ତାହାଙ୍କର ତାଦୃଶ ଅବସ୍ଥା ଦେଖି ଦୟାର୍ଦ୍ରଚିତ୍ତ ହୋଇ ତାହାଙ୍କୁ ଆପଣାର ମେଷଶାଳାକୁ ନେଇଗଲା । ସେଠାରେ ମେଷପୁରୀଷ ରାଶି ବ୍ୟତିରେକେ ଅନ୍ୟବିଧ ଶଯ୍ୟାର ସଙ୍ଗତି ଥିଲା ନାହିଁ । ଯାବତ୍ ତାହାଙ୍କର ପୀଡ଼ୋପଶମ ନ ହେଲା

ତାବନ୍ତ ସେହି କୃଷକ ତାହାଙ୍କୁ ମେଷପୁଷ୍ପ ରାଶିରେ ଆକଣ୍ଠ ମଗ୍ନ କରି ରଖିଲା ଏବଂ ଅତିକଦର୍ଯ୍ୟ ମୋଟା ରୋଟୀ ଓ ପାଣି ଏହି ମାତ୍ର ପଥ୍ୟ ଦେବାକୁ ଲାଗିଲା । ଏହି ରୂପ ଚିକିତ୍ସା ଓ ଶୁଶ୍ରୂଷାରେ ଶୁଙ୍କା ସେ ସୌଭାଗ୍ୟ କ୍ରମେ ଏହି ଭୟାନକ ରୋଗ ଆକ୍ରମଣରୁ ରକ୍ଷା ପାଇଲେ । ପରେ କୌଣସି ପ୍ରତିବାସୀ ଯାଜକର ଆଶ୍ରୟ ପାଇ ସମ୍ପୂର୍ଣ୍ଣ ରୂପେ ସୁସ୍ଥ ହେଲେ ।

ଡ଼ୁବାଲ ନାମ୍ନୀ ନିକଟସ୍ଥ ଏକ ମେଷପାଳକ ଗୃହରେ ନିଯୁକ୍ତ ହୋଇ, ସେ ସ୍ଥାନରେ ଦୁଇ ବରଷ ଅବସ୍ଥିତି କଲେ । ସେ ସେହି ସମୟରେ ଭୂୟସୀ ଜ୍ଞାନଶକ୍ତି ସମ୍ପାଦନ କରିଥିଲେ । ଡ଼ୁବାଲ ଶୈଶବ କାଳରୁ ଅନୁସନ୍ଧିତ୍ସୁ ଥିଲେ । ଅତି ଶୈଶବ କାଳରେ ସର୍ପ, ମଣ୍ଡୂକ ପ୍ରଭୃତି ନାନାବିଧ ଜନ୍ତୁ ସଂଗ୍ରହ କରିଥିଲେ ଏବଂ ପଡ଼ୋଶୀ ଲୋକମାନଙ୍କୁ, ଏହି ସକଳ ଜନ୍ତୁର କିରୂପ ଅବସ୍ଥା ଓ ଏମାନେ ଏରୂପ ନିର୍ମିତ ହେଲେ କପାଇଁ, ଏମାନଙ୍କ ସୃଷ୍ଟିର ତାତ୍ପର୍ଯ୍ୟ କି ସେ ଏବମ୍ବିଧ ଅନେକ ପ୍ରଶ୍ନଦ୍ୱାରା ସବୁବେଳେ ବିରକ୍ତ କରନ୍ତି । କିନ୍ତୁ ଏହି ସକଳ ପ୍ରଶ୍ନର ଯେ ଉତ୍ତର ପାଆନ୍ତି ତାହା ତାହାଙ୍କର ସନ୍ତୋଷଜନକ ହୁଅନ୍ତି ନାହିଁ । ସାମାନ୍ୟ ବୁଦ୍ଧି ଲୋକମାନେ ସାମାନ୍ୟ ବସ୍ତୁକୁ ସାମାନ୍ୟ ଜ୍ଞାନ କରନ୍ତି । କିନ୍ତୁ ଅସାମାନ୍ୟ ଜ୍ଞାନ ସମ୍ପନ୍ନ ଲୋକମାନେ କୌଣସି ବସ୍ତୁକୁ ସାମାନ୍ୟ ଜ୍ଞାନ କରନ୍ତି ନାହିଁ । ଏନିମନ୍ତେ ସର୍ବଦା ଏରୂପ ଘଟିଥାଏ ଯେ ପ୍ରାକୃତ ଲୋକମାନେ ମହାନୁଭବଙ୍କର ପ୍ରଥମ କାର୍ଯ୍ୟ ସକଳ ଦେଖି ଉନ୍ମାଦ ଜ୍ଞାନ କରନ୍ତି ।

ପର କରେ ଡ଼ୁବାଲ କୌଣସି ଗ୍ରାମସ୍ଥ ଏକ ବାଳକ ହସ୍ତରେ ଇଷପଙ୍କରଚିତ ଗଳ୍ପର ପୁସ୍ତକ ଅବଲୋକନ କଲେ । ସେହି ପୁସ୍ତକ ପଶୁ, ପକ୍ଷୀ, ସର୍ପ ପ୍ରଭୃତି ନାନାବିଧ ଜନ୍ତୁର ପ୍ରତିମୂର୍ତ୍ତିରେ ଅଳଙ୍କୃତ ଥିଲା । ଏପର୍ଯ୍ୟନ୍ତେ ଡ଼ୁବାଲର ବର୍ଣ୍ଣ ପରିଚୟ ହୋଇ ନାହିଁ ସୁତରାଂ ପୁସ୍ତକରେ କି ବିଷୟ ଲେଖାଥିଲା ତାହାର ବିନ୍ଦୁ ବିସର୍ଗ ଶୁଦ୍ଧା ଅନୁଧାବନ କରି ପାରିଲେ ନାହିଁ । ଯେଉଁ ସକଳ ଜନ୍ତୁ ଦେଖିଲେ ସେମାନଙ୍କ ନାମ ଜାଣିବାକୁ ଓ ତତ୍ତତ୍ ବିଷୟରେ ଇଷପ କି ଲେଖି ଅଛନ୍ତି ତାହା ଶୁଣିବାକୁ ଅତ୍ୟନ୍ତ କୌତୂହଳାକ୍ରାନ୍ତ ଓ ବ୍ୟଗ୍ରଚିତ୍ତ ହୋଇ, ଆପଣା ସମକ୍ଷରେ ସେହି ପୁସ୍ତକ ପଢ଼ିବା ନିମନ୍ତେ ସ୍ୱୀୟ ସହଚରକୁ ଅତ୍ୟନ୍ତ ଅନୁରୋଧ କରିବାକୁ ଲାଗିଲେ । କିନ୍ତୁ ସେହି ବାଳକ କୌଣସି ପ୍ରକାରେ ତାହାଙ୍କର ବାସନା ପୂର୍ଣ୍ଣ କଲେ ନାହିଁ । ଏହିପରି ସବୁବେଳେ ତାହାଙ୍କୁ କୌତୂହଳାକ୍ରାନ୍ତ ଓ ପରିଶେଷରେ ଏକାନ୍ତ ବିଷାଦ ପ୍ରାପ୍ତ ହେବାକୁ ହୁଏ ।

ଏହି ରୂପେ ଯତ୍ପରୋନାସ୍ତି କ୍ଷୋଭ ପ୍ରାପ୍ତ ହୋଇ, ଏତାଦୃଶ ହୀନ ଅବସ୍ଥାରେ ରହି ମଧ୍ୟ, ସେ ଏ ପ୍ରକାର ପ୍ରତିଜ୍ଞା କଲେ, ଯେତେ କଷ୍ଟ ହେଉ ନା

କେନେ, ଯେ ରୂପ ପାଉବୁଁ ଲେଖା ପଢା ଶିଖିବୁଁ । ଏହି ରୂପ ଅଧ୍ୟବସାୟରୂଢ଼ ହୋଇ, ଯେତେ ଅର୍ଥ ଉପାର୍ଜନ କରିବାକୁ ଲାଗିଲେ ପ୍ରାଣପଣରେ ତାହା ସଞ୍ଚୟ କରିବାକୁ ଲାଗିଲେ; ଏବଂ ତଦ୍ଦ୍ୱାରା ଅନ୍ୟାନ୍ୟ ବୟୋଧିକ ବାଳକମାନଙ୍କୁ ସନ୍ତୁଷ୍ଟ କରି ସେମାନଙ୍କ ନିକଟରେ ବିଦ୍ୟା ଶିଖିବାକୁ ଆରମ୍ଭ କଲେ ।

ଡୁବାଲ ଅଳ୍ପ ଦିନ ମଧ୍ୟରେ ଅସାମାନ୍ୟ ପରିଶ୍ରମଦ୍ୱାରା ଆପଣାର ଅଭିପ୍ରେତ ଏକ ପ୍ରକାର ସିଦ୍ଧ କରି ଘଟଣାକ୍ରମରେ ଦିନକରେ ଖଣ୍ଡେ ପାଞ୍ଜି ଅବଲୋକନ କଲେ । ସେହି ପାଞ୍ଜିରେ ଦ୍ୱାଦଶ ରାଶି ଚର୍ଚ୍ଚିତ ଥିଲା ସେ ତାକୁ ଦେଖି ଅନାୟାସରେ ସ୍ଥିର କଲେ ଯେ ଏହି ସକଳ ଆକାଶମଣ୍ଡଳସ୍ଥିତ ପଦାର୍ଥ ବିଶେଷର ପ୍ରତିମୂର୍ତ୍ତି ହେବ ସନ୍ଦେହ ନାହିଁ । ଅନନ୍ତର ସେହି ସକଳ ପ୍ରତ୍ୟକ୍ଷ କରିବା ନିମନ୍ତେ ଏକ ଦୃଷ୍ଟିରେ ନିରୀକ୍ଷଣ କରିବାକୁ ଲାଗିଲେ ଏବଂ ସେହି ସକଳ ଦେଖିଲୁଁ ବୋଲି ଯାବତ୍ ତାହାଙ୍କର ଅନ୍ତଃକରଣରେ ଦୃଢ ବିଶ୍ୱାସ ହେଲା ତାବତ୍ ସେ କୌଣସି ପ୍ରକାରେ କ୍ଷାନ୍ତ ହେଲେ ନାହିଁ । କିଛି ଦିନ ଉତ୍ତାରେ ସେ ଏକଦା କୌଣସି ମୁଦ୍ରାଯନ୍ତ୍ରାଳୟର ଗବାକ୍ଷ ନିକଟ ଦେଇ ଗମନ କରୁଁ କରୁଁ ତନ୍ମଧ୍ୟରେ ଏକ ଭୂଗୋଳ ମାନଚିତ୍ର ଦେଖିବାକୁ ପାଇଲେ । ତାହା ପୂର୍ବଦୃଷ୍ଟ ସମସ୍ତ ବସ୍ତୁଠାରୁ ଉପାଦେୟ ବୋଧ ହେବାରୁ ସେ ତତ୍କ୍ଷଣାତ୍ କ୍ରୟ କରି ନେଲେ; ଏବଂ କେତେ ଦିନ ପର୍ଯ୍ୟନ୍ତେ, ଅବସର ପାଇଲେ, ଅନନ୍ୟମନା ଓ ଅନନ୍ୟକର୍ମା ହୋଇ କେବଳ ତାହା ପାଠ କରିବାକୁ ଲାଗିଲେ । ବିଷୁବରେଖା ମଧ୍ୟସ୍ଥିତ ଅଂଶ ସକଳ ଅବଲୋକନ କରି ପ୍ରଥମରେ ସେହି ସକଳକୁ ଫ୍ରାନ୍ସ ପ୍ରଚଳିତ ଲିଗ୍ ଅର୍ଥାତ୍ ସାର୍ଦ୍ଧ କୋଶର ଚିହ୍ନ ବୋଧ କରିଥିଲେ । ପରନ୍ତୁ ସାମୈନଠାରୁ ଲୋରେନ ଆଦିତେ ସେହି ରୂପ ଅନେକ ଲିଗ ଅତିକ୍ରମ କରିବାକୁ ହୋଇଅଛି । କିନ୍ତୁ ଭୂଚିତ୍ରରେ ସେ ସକଳର ଅନ୍ତର ଅତି ଅଳ୍ପ ଲକ୍ଷ୍ୟ ହେଉଅଛି; ଏହି ବିବେଚନା କରି ସେହି ପ୍ରଥମ ସିଦ୍ଧାନ୍ତ ଭୁଲ ବୋଲି ସ୍ଥିର କଲେ । ଯାହା ହେଉ ଏହି ଭୂଚିତ୍ର ଓ ଅନ୍ୟାନ୍ୟ ଭୂଚିତ୍ର ସକଳ ଅଭିନିବେଶ ପୂର୍ବକ ପାଠ କରି କ୍ରମେ କ୍ରମେ କେବଳ ସେହି ଚିହ୍ନ ସକଳର ସ୍ୱରୂପ ଓ ତାତ୍ପର୍ଯ୍ୟ ସୂକ୍ଷ୍ମାନୁସୂକ୍ଷ୍ମ ରୂପେ ନିର୍ଦ୍ଧାରିତ କଲେ । ଏମନ୍ତ ନୁହେ, ଭୂଗୋଳବିଦ୍ୟା ସମ୍ବନ୍ଧୀୟ ପ୍ରାୟ ସକଳ ସଂଜ୍ଞା ଓ ମର୍ମଗ୍ରହ କରିଲେ । ଡୁବାଲ ଏହି ରୂପେ ଗାଢ଼ତର ଅନୁରାଗ ଓ ଅଭିନିବେଶ ସହକାରେ ଅଧ୍ୟୟନ କରିବାକୁ ଲାଗିଲେ କିନ୍ତୁ ଅନ୍ୟାନ୍ୟ କୃଷକ ବାଳକମାନେ ଅତ୍ୟନ୍ତ ବ୍ୟାଘାତ ଜନ୍ମାଇବାକୁ ଲାଗିଲେ । ଅତଏବ ସେ ବିଜନ ସ୍ଥାନ ଲାଭ ନିମନ୍ତେ ଅତ୍ୟନ୍ତ ଉତ୍ସୁକ ହେଲେ । ଦିନକରେ ଘଟଣାକ୍ରମେ ବନ ସ୍ଥବ ନିକଟରେ ଏକ ଆଶ୍ରମ ଦେଖି ଏମନ୍ତ ପ୍ରୀତିପ୍ରାପ୍ତ ହେଲେ । ତତ୍କ୍ଷଣାତ୍ ମନେ ମନେ ସଙ୍କଳ୍ପ କଲେ; ଯେ ତତ୍ରତ୍ୟ ତପସ୍ୱୀ ପାଲମାନର ଅନୁବର୍ତ୍ତୀ ହୋଇ

ଧର୍ମଚର୍ଚ୍ଚା ବିଷୟରେ କିଞ୍ଚିତ୍ ମନୋନିବେଶ କରିବା । ଅନନ୍ତର ପାଲିମାନଙ୍କୁ ଆପଣା ପ୍ରାର୍ଥନା ଜଣାଇଲେ । ପାଲିମାନ ଅନୁଗ୍ରହ ପୂର୍ବକ ତାହାଙ୍କ ପ୍ରାର୍ଥନା ବିଷୟରେ ସମ୍ମତ ହେଲେ ଏବଂ ଆପଣା ଅଧିକାର ମଧ୍ୟରେ ଯେ ଏକ ପଦ ଶୂନ୍ୟଥିଲା ସେଥିରେ ତାହାଙ୍କୁ ନିଯୁକ୍ତ କଲେ । କିନ୍ତୁ ଅନତିଚିରକାଳ ମଧ୍ୟରେ ପାଲିମାନଙ୍କର କର୍ତ୍ତୃପକ୍ଷୀୟ ମାନେ ସେହି ପଦରେ ଅନ୍ୟ ବ୍ୟକ୍ତିଙ୍କୁ ନିଯୁକ୍ତ କରି ପଠାଇଲେ ।

ଲୁନବିଲର ପାଦୋନ କୋଣ ଅନ୍ତରେ ସେଣ୍ଟ ଏନ ନାମକ ଏକ ଆଶ୍ରମ ଥିଲା ସେଠାରେ ଥୋକାଏ ତପସ୍ୱୀ ଥିଲେ । ପାଲିମାନ ସାଧ୍ୟାନୁସାରେ ଡ଼ୁବାଲର କ୍ଷୋଭ ଶାନ୍ତ କରିବା ନିମନ୍ତେ ସେମାନଙ୍କର ଆଶ୍ରମକୁ ଏକ ଅନୁରୋଧପତ୍ର ସହିତ ତାହାଙ୍କୁ ପଠାଇଲେ । ସେହି ସଙ୍ଘର୍ଷ ତପସ୍ୱୀମାନଙ୍କର ଆଜୀବନ ସ୍ୱରୂପ ଯେ ଛଟା ଧେନୁ ଥିଲା ସେମାନେ ଡ଼ୁବାଲଙ୍କୁ ସେ କଲର ରକ୍ଷଣାବେକ୍ଷଣର ଭାର ଦେଲେ । ବୋଧ ହୁଅଇ ତପସ୍ୱୀମାନେ ଡ଼ୁବାଲଠାରୁ ଅଜ୍ଞ ଥିଲେ । କିନ୍ତୁ ସେମାନଙ୍କର କେତେ ଗୋଟିଏ ପୁସ୍ତକ ଥିଲା; ସେମାନେ ଡ଼ୁବାଲଙ୍କୁ ତାହା ପାଠ କରିବା ନିମନ୍ତେ ଅନୁମତି ଦେଲେ । ଡ଼ୁବାଲ ଯେ ସକଳ କଠିଣ ବିଷୟ ବୁଝିବାକୁ ପାରନ୍ତି ନାହିଁ ତାହା ଆଶ୍ରମଦର୍ଶନାଗତ ଲୋକମାନଙ୍କ ନିକଟରୁ ବୁଝି ନିଅନ୍ତି । ଏସ୍ଥାନରେ ମଧ୍ୟ କଷ୍ଟ ସ୍ୱୀକାର କରି ଯାହା କିଛି ଅର୍ଥ ବଞ୍ଚାଇ ପାରନ୍ତି ତାହା ଅନ୍ୟ କୌଣସି ବିଷୟରେ ବ୍ୟୟ ନ କରି ତଦ୍ଦ୍ୱାରା କେବଳ ପୁସ୍ତକ ଓ ଭୂଚିତ୍ର ମାତ୍ର କ୍ରୟ କରନ୍ତି । ଏହି ସ୍ଥାନରେ ଅନେକ ପ୍ରତିବନ୍ଧକ ଥିଲେ ମଧ୍ୟ ଲେଖିବାକୁ ଓ ଅଙ୍କ କଷିବାକୁ ଲାଗିଲେ ।

କୌଣସି ଭୂଚିତ୍ର ନିମ୍ନଭାଗରେ ସମ୍ଭ୍ରାନ୍ତ ଲୋକ ବିଶେଷର ପରିଚ୍ଛଦ ଚିହ୍ନିତ ଥିଲା । ସେଥିରେ ଗ୍ରିଫିନ ଓ ଉତ୍କ୍ରୋଶ ପକ୍ଷୀ ଲାଙ୍ଗୁଳଦ୍ୱୟୋପଲକ୍ଷିତ କେଶରୀ ଓ ଅନ୍ୟାନ୍ୟ ବିକଟାକାର ଅଦ୍ଭୁତ ଜନ୍ତୁ ନିରୀକ୍ଷଣ କରି; ଆଶ୍ରମାଗତ କୌଣସି ଲୋକଙ୍କୁ ପଚାରିଲେ ପୃଥିବୀରେ ଏବମ୍ବିଧ ଜନ୍ତୁ ଅଛନ୍ତି କି ନା ? ସେ କହିଲେ କୁଳାଦର୍ଶ ନାମରେ ଏକ ଶାସ୍ତ୍ର ଅଛି ଏହି ସମସ୍ତ ତାହାର ସଙ୍କେତ । ଶୁଣିବାମାତ୍ର ସେଇ ଶବ୍ଦଟା ଲେଖି ନେଲେ ଏବଂ ଅତିଶୀଘ୍ର ନିକଟସ୍ଥ ନଗରରୁ ଉକ୍ତ ବିଦ୍ୟାର ଖଣ୍ଡେ ପୁସ୍ତକ କ୍ରୟ କରି ଆଣିଲେ ଏବଂ ଅବିଳମ୍ବେ ତଦ୍ବିଷୟରେ ବିଶେଷଜ୍ଞ ହୋଇ ଉଠିଲେ ।

ଜ୍ୟୋତିର୍ବିଦ୍ୟା ଓ ଭୂଗୋଳ ବୃତ୍ତାନ୍ତ ଅଧ୍ୟୟନରେ ଡ଼ୁବାଲ ଅତ୍ୟନ୍ତ ଅନୁରକ୍ତ ଥିଲେ । ସେ ସର୍ବଦା ସନ୍ନିହିତ ବିପିନ ମଧ୍ୟରେ ନିର୍ଜନ ପ୍ରଦେଶ ଅନ୍ୱେଷଣ କରି ନେଇ ଏବଂ ଏକାକୀ ସେ ସ୍ଥାନରେ ରହି ନିଦାଘ ଯାମିନୀର ଅଧିକାଂଶ

ଜ୍ୟୋତିର୍ମଣ୍ଡଳ ପର୍ଯ୍ୟବେକ୍ଷଣରେ ଯାପନ କରନ୍ତି । ଏବଂ ସ୍ୱ ମସ୍ତକୋପରି ପରିଶୋଭମାନ ମୌକ୍ତିକମୟ ନଭୋମଣ୍ଡଳର ବିଷୟ ଜାଣିବାକୁ ଇଚ୍ଛା କରନ୍ତି । ଯେପରି ଅବସ୍ଥା, ମନୋରଥର ଆଉ ଅଧିକ କି ଘଟି ପାରେ । ଜ୍ୟୋତିର୍ମଣ୍ଡଳର ବିଷୟ ବିଶେଷ ରୂପେ ଜାଣିବାକୁ ପାରିବେ ଏହି ବାସନାରେ ଅତ୍ୟୁନ୍ନତ ଓ ବୃକ୍ଷ ଶାଖୋପରି ବନ୍ୟଦ୍ରାକ୍ଷା ଓ ଉଇଲୋଶାଙ୍ଗର ପରସ୍ପର ସଯୋଜନା କରି ସ୍ୱାରସ୍ୟକୁଳାୟ ସନ୍ନିଭ ଏକପ୍ରକାର ବସିବାର ସ୍ଥାନ ନିର୍ମାଣ କଲେ ।

ଡ଼୍ୱାଲର କ୍ରମଶଃ ୨ ଯେପରି ଜ୍ଞାନବୃଦ୍ଧି ହେବାକୁ ଲଗିଲା ପୁସ୍ତକ ବିଷୟରେ ମଧ୍ୟ ତେତେ ଆକାଙ୍‌କ୍ଷା ବୃଦ୍ଧି ହେବାକୁ ଲଗିଲା କିନ୍ତୁ ପୁସ୍ତକ କ୍ରୟର ଯେ ନିର୍ଦ୍ଧାରିତ ଉପାୟ ଥିଲା ସେଥିରେ ତାହାଙ୍କର ମନୋବାଞ୍ଛା ସଫଳର ସମ୍ଭାବନା ଥିଲା ନାହିଁ, ଅତଏବ ସେ ଆୟବୃଦ୍ଧି କରିବା ନିମନ୍ତେ ଫାସ ବସାଇ ଜନ୍ତୁ ଧରିବାକୁ ଆରମ୍ଭ କଲେ ଏବଂ କିଛି କାଳ ଏହି ବ୍ୟବସାଦ୍ୱାରା କିଛି ୨ ଲଭ କରିବାକୁ ଲାଗିଲେ । ଆୟ ବୃଦ୍ଧି ସମ୍ପାଦନ ନିମନ୍ତେ କେତେବେଳେ ୨ ଅତ୍ୟନ୍ତ ଦୁଃସାହସିକ ବ୍ୟାପାରରେ ପ୍ରବୃତ୍ତ ହେବାକୁ ପରାଙ୍‌ମୁଖ ହୁଅନ୍ତି ନାହିଁ ।

ଏକଦା ସେ କାନନ ମଧ୍ୟରେ ଭ୍ରମଣ କରୁଁ ୨ ବୃକ୍ଷୋପରି ଏ ଅତିଶକ୍‌ଳଣ-ଲୋମା ଅରଣ୍ୟ ମାର୍ଜାରି ଅବଲୋକନ କଲେ ଇହା ଚର୍ମ ଅନେକ ପ୍ରୟୋଜନ ହେବ, ଏହା ସ୍ଥିର କରି ତତ୍‌କ୍ଷଣ ବୃକ୍ଷୋପରି ଆରୋହଣ ପୂର୍ବକ ଅତିଦୀର୍ଘ ଯଷ୍ଟିଦ୍ୱାରା ମାର୍ଜାରକୁ ଅଧିଷ୍ଠାନ ଶାଖାରୁ ଅବତୀର୍ଣ୍ଣ କରାଇଲେ । ବିରାଡ଼ୀ ଦୌଡ଼ିବାକୁ ଲାଗିଲା । ଡ଼୍ୱାଲ ମଧ୍ୟ ତାହାର ପଶ୍ଚାତ୍ ୨ ଧାବମାନ ହେଲେ । ସେ ଏକ ତରୁ କୋଟରରେ ପ୍ରବେଶ ହେଲା; ପରେ ସେଠାରୁ ତାହାକୁ ନିଷ୍କାସିତ କରିବାମାତ୍ର ତାହାଙ୍କ ହାତ ଉପରେ ଝାମ୍ପି ପଡ଼ିଲା ଅନନ୍ତର ଦୁହିଙ୍କର ଘୋରତର ଯୁଦ୍ଧ ଆରମ୍ଭ ହେଲେ କୁପିତ ବିରାଡ଼ୀ ତାହାଙ୍କ ମସ୍ତକର ପଶ୍ଚାଦ୍ ଭାଗରେ ନଖ ପ୍ରହାର କଲା । ଡ଼୍ୱାଲ ତଥାପି ତାହାକୁ ଟାଣିବାକୁ ଲାଗିଲେ । ବିରାଡ଼ୀ ଆତ୍ମର ଶକ୍ତିରୂପେ ଧରି; ନଖଦ୍ୱାରା ଖଣ୍ଡେ ଚମଡ଼ା ଉଠାଇ ନେଲା । ଅନନ୍ତର ଡ଼୍ୱାଲ ନିକଟସ୍ଥ ବୃକ୍ଷୋପରି ବାରମ୍ବାର ଆଘାତ କରି ମାର୍ଜାରର ପ୍ରାଣ ସଂହାର କଲେ ଏବଂ ହର୍ଷୋତ୍‌ଫୁଲ୍ଲ ଲୋଚନେ ତାହାକୁ ଘରକୁ ଆଣିଲେ । ଆଉ ଏହାଦ୍ୱାରା କିଛି ପୁସ୍ତକ ସଂଗ୍ରହ କରି ପାରିବା ଏହି ଆନନ୍ଦରେ ବିଡ଼ାଳକୃତ କ୍ଷତ ମନରେ ଶୁଝା କଲେ ନାହିଁ ।

ଡ଼୍ୱାଲ ଆରଣ୍ୟ ଜନ୍ତୁ ଧରିବାକୁ ଯାଇ ଅନେକଥର ଭୟାବହ କର୍ମରେ ନିଯୁକ୍ତ ହୁଅନ୍ତି ଏବଂ ସେହି ସକଳ ଜନ୍ତୁର ଚର୍ମ ଲୁନବଲରେ ବିକ୍ରୟ କରି ତଦ୍ଦ୍ୱାରା ଅଭିଲଷିତ ପୁସ୍ତକ କ୍ରୟ କରନ୍ତି । ପରିଶେଷରେ ଏକ ଶୁଭ ଘଟଣା ହେବାରୁ

ଏକାବେଳକେ ଅନେକ ପୁସ୍ତକ ସଂଗ୍ରହ କରି ପାରିଲେ । ଏକଦା ଶରତ୍କାଳେ କାନନ ମଧ୍ୟରେ ଭ୍ରମଣ କରୁଁ ସମ୍ମୁଖବର୍ତ୍ତୀ ଶୁଷ୍କ ପର୍ଣ୍ଣରାଶିରେ ଆଘାତ କରିବାମାତ୍ର ଭୂତଳରେ କୌଣସି ଉଜ୍ଜ୍ୱଳ ବସ୍ତୁ ଅବଲୋକନ କଲେ ଏବଂ ତତ୍କ୍ଷଣାତ୍ ହସ୍ତଗତ କରି ଦେଖିଲେ ତାହା ସ୍ୱର୍ଣ୍ଣମୟ ମୁଦ୍ରା, ତହିଁରେ ଢନଗୁଣ୍ଠା ମୁଣ୍ଡ ଉତ୍ତମରୂପେ ଉତ୍କୀର୍ଣ୍ଣ ଅଛି । ଡୁବାଲ ଇଚ୍ଛା କଲେ ସେହି କାଞ୍ଚନମୟ ମୁଦ୍ରା ଆତ୍ମସାତ୍ କରି ପାରନ୍ତେ । ମାତ୍ର ସେ ପରଦ୍ରବ୍ୟ ଅପହରଣ କରିବା ଗର୍ହିତ ଓ ଅଧର୍ମ ବୋଲି ଜାଣନ୍ତି ଅତଏବ ପର ରବିବାରରେ ଲୁନିବିଲକୁ ଯାଇ ତତ୍ରତ୍ୟ ଧର୍ମାଧ୍ୟକ୍ଷ ନିକଟରେ ନିବେଦନ କଲେ, ଅବଧାନ ! ଅରଣ୍ୟ ମଧ୍ୟରୁ ଆମ୍ଭେ ଏକ ସ୍ୱର୍ଣ୍ଣମୁଦ୍ରା ପାଇଅଛୁଁ । ଆପଣ ଏହି ଧର୍ମାଳୟରେ ଘୋଷଣା କରି ଦେଉନ୍ତୁ ଯେ ଯେଉଁ ଲୋକର ହଜିଅଛି ସେ ସେଣ୍ଟଏନର ଆଶ୍ରମକୁ ଯାଇ ଆମ୍ଭ ନିକଟରେ ଆବେଦନ କଲେ ଆପଣାର ଭ୍ରଷ୍ଟ ବସ୍ତୁ ପାଇବେ ।

କେତେକ ସପ୍ତାହ ଉତ୍ତାରେ ଇଂଲଣ୍ଡ ଦେଶୀୟ ଫରଷ୍ଟର ନାମଧେୟ ଏକ ଲୋକ ଅଶ୍ୱାରୋହଣ କରି ସେଣ୍ଟଏନର ଆଶ୍ରମଦ୍ୱାରରେ ଉପସ୍ଥିତ ହୋଇ ଡୁବାଲକୁ ଅନ୍ୱେଷଣ କଲେ ଏବଂ ଡୁବାଲ ଉପସ୍ଥିତ ହେଲେ, ସେ ପଚାରିଲେ ତୁମ୍ଭେ କି ଏକ ମୁଦ୍ରା ପାଇଅଛ ? ଡୁବାଲ କହିଲେ ହଁ ଅବଧାନ ପାଇଅଛୁଁ, ସେ କହିଲେ ଆମ୍ଭେ ବଡ଼ ଉପକୃତ ହେଲୁଁ, ସେ ଆମ୍ଭର ମୁଦ୍ରା । ଡୁବାଲ କହିଲେ ତେବେ ଆପଣ ଦୟା କରି ଆଗେ କୁଳାଦର୍ଶାନୁଯାୟୀ ଭାଷାରେ ନିଜ ଆଭିଜାତ୍ୟ ଚିହ୍ନ ବର୍ଣ୍ଣନ କରନ୍ତୁ, ତେବେ ଆମ୍ଭେ ଆପଣଙ୍କୁ ମୁଦ୍ରା ଦେବା । ସେତେବେଳେ ସେ ଆଗନ୍ତୁକ କହିଲେ ହେ ବାଳକ ! ତୁମ୍ଭେ ଆମ୍ଭ ସହିତ ପରିହାସ କରୁଅଛ; କୁଳାଦର୍ଶର ବିଷୟ ତୁମ୍ଭେ କି ବୁଝିବ । ଡୁବାଲ କହିଲେ ଯେ ଯାହା ହେଉ ଆପଣ ନିଜ ଆଭିଜାତ୍ୟ ଚିହ୍ନ ବର୍ଣ୍ଣନ ନ କଲେ ମୁଦ୍ରା ପାଇପାରିବେ ନାହିଁ ।

ଡୁବାଲ ନିର୍ବନ୍ଧାତିଶଯ୍ୟ ଦର୍ଶନରେ ଚମତ୍କୃତ ହୋଇ ଫରଷ୍ଟର ତାହାଙ୍କର ଜ୍ଞାନ ପରୀକ୍ଷା ନିମନ୍ତେ ତାହାଙ୍କୁ ନାନା ବିଷୟର କଥା ପଚାରିବାକୁ ଲାଗିଲେ । ପରିଶେଷରେ ତଦ୍ଦତ୍ତ ଉତ୍ତର ଶୁଣି ସନ୍ତୁଷ୍ଟ ହୋଇ ନିଜ ଆଭିଜାତ୍ୟ ଚିହ୍ନ ବର୍ଣ୍ଣନଦ୍ୱାରା ତାହାଙ୍କର ପ୍ରାର୍ଥନା ସିଦ୍ଧ କରି ମୁଦ୍ରାଗ୍ରହଣ ପୂର୍ବକ ଦୁଇ କାଞ୍ଚନ ମୁଦ୍ରା ପୁରସ୍କାର ଦେଲେ; ଏବଂ ପ୍ରସ୍ଥାନ ସମୟରେ ଡୁବାଲକୁ କହି ଗଲେ ତୁମ୍ଭେ ଲୁନିବିଲରେ କେହି ୨ ସମୟରେ ଆମ୍ଭ ସହିତ ସାକ୍ଷାତ୍ କରିବ । ପରେ ଲୁନିବିଲରେ ତାହାଙ୍କ ସହିତ ଡୁବାଲର ସାକ୍ଷାତ୍ ହେଲେ । ସେ ଡୁବାଲକୁ ଏକ ୨ ରଜତମୁଦ୍ରା ପାରିତୋଷିକ ଦିଅନ୍ତି । ଏହି ରୂପେ ଡୁବାଲ ଫରଷ୍ଟର

ନିକଟରୁ ମୁଦ୍ରା ଓ ପୁସ୍ତକ ପାଇ ସେଣ୍ଟଏନ ରକ୍ଷୁଆଲର ପୁସ୍ତକାଳୟ ଗୃହ ଶତ ଖଣ୍ଡ ପୁସ୍ତକରେ ପୂର୍ଣ୍ଣ କଲେ ହେଁ ।

ତାହା ମଧ୍ୟରେ ବଜ୍ଞାନଶାସ୍ତ୍ର ଓ ପୁରାବୃତ୍ତ ବଷୟର ବହୁତର ପୁସ୍ତକ ଥିଲା । ଏହି ରୂପ ଡୁବାଲ ଦ୍ୱାବିଂଶତ ବରଷ ବୟଃକ୍ରମ ପ୍ରାପ୍ତ ହେଲେ; କିନ୍ତୁ ଏପର୍ଯ୍ୟନ୍ତ ଆପଣା ହୀନ ଅବସ୍ଥା ପରବର୍ତ୍ତି[ନ]ର ଚେଷ୍ଟା ହେନେ ପାଇଁ ଶୁଦ୍ଧା ମନରେ କଲେ ନାହିଁ । ବାସ୍ତବ ସେ ଏପର୍ଯ୍ୟନ୍ତେ ଜ୍ଞାନ ଗୃଢ଼ ସକଳ ବଷୟରେ ରକ୍ଷୁଆଲ ଥିଲେ । ପ୍ରତଦବସ ଗୋରୁ ଚରାଇବା ସମୟରେ ତରୁତଳେ ଉପବଷ୍ଟ ହୋଇ ଆପଣାର ଗୃହ ଆଡେ ଭୂଚତ୍ର ଓ ପୁସ୍ତକ ସକଳ ବସ୍ତୃତ କର, ଏବଂ ଧେନୁଗଣର ରକ୍ଷଣା-ବେକ୍ଷଣରେ କଞ୍ଚିନ୍ମାତ୍ର ଶୁଦ୍ଧା ମନୋଯୋଗ ନ କର କେବଳ ଅଧ୍ୟୟନ ବଦ୍ୟରେ ନମଗ୍ନ ଥାଆନ୍ତ ଧେନୁଗଣ ସ୍ୱଚ୍ଛନ୍ଦଂରେ ଏଣେ ତେଣେ ଚରୁଥାଆନ୍ତ ।

ଏକଦା, ସେ ଏହି ରୂପେ ଅବସ୍ଥିତ ଅଛନ୍ତ ଏମନ୍ତ ସମୟରେ ସହସା ଏକ ସୌମ୍ୟମୂର୍ତ୍ତି ପୁରୁଷ ଆସି ତାହାଙ୍କର ସମ୍ମୁଖସ୍ଥ ହେଲେ । ଡୁବାଲଙ୍କୁ ଦେଖି ତାହାଙ୍କ ହୃଦୟରେ ଯୁଗପତ୍ କାରୁଣ୍ୟ ଓ ବସ୍ମୟରସର ଉଦୟ ହେଲା । ଏହି ମହାନୁଭବ ଲୋକ ଲରେନ ରାଜକୁମାରମାନଙ୍କର ଅଧ୍ୟାପକ ନାମ କୌଣ୍ଡ୍[ଷ୍ଟ] ବ ଡାର୍ମିଗୃର ଏହି ଲୋକ ଓ ରାଜକୁମାରଗଣ ଓ ଆଉ ଏକ ଅଧ୍ୟାପକ ମୃଗୟା କରବା ପାଇଁ ଯାଇଥିଲେ, ସମସ୍ତଙ୍କର ଏହି ବଜନ ବପିନରେ ପଥଭ୍ରମ ହୋଇ-ଥିଲା । କୌଣ୍ଟ ମହାଶୟ ଅପସୃତ ବରଳ କେଶ ଅଛ ହୀନବେଶ ରକ୍ଷୁଆଲର ଗୃହଆଡେ ପୁସ୍ତକ ଓ ଭୂଚତ୍ରାଣି ପ୍ରସାରତ ଦେଖି ଏମନ୍ତ ଚମତ୍କୃତ ହେଲେ ଯେ ଏହି ଅଦଭୁତ ବ୍ୟାପାର ପ୍ରତ୍ୟକ୍ଷ କରବା ନମନ୍ତେ ସ୍ୱୀୟ ସହଚରମାନଙ୍କୁ ସେ ସ୍ଥାନକୁ ଡାକଆଣିଲେ ଏହିରୂପେ ମୃଗୟା ବେଶଧାରୀ ଦେଶାଧିପତନୟଗଣ ଡୁବାଲଙ୍କ ଚତୁଷ୍ପାର୍ଶ୍ୱରେ ବେଷ୍ଟିତ ହୋଇ ଠିଆ ହେଲେ । ଏସ୍ଥଳରେ ପାଠକ-ଗଣର ସ୍ମରଣ ନମନ୍ତେ ଏହା ଲେଖିଲେ ଅସଙ୍ଗତ ହେବ ନାହିଁ ଯେ ସେହି କୁମାରମାନଙ୍କ ମଧ୍ୟରେ ଏକ ଜଣ ପରେ ମେରୟାଥେରସାର ପାଣିପୀଡନ କଲେ ଓ ଜର୍ମନର ସମ୍ରାଟ ହେଲେ ।

ଏହି ବ୍ୟାପାର ନୟନଗୋଚର କର ସମସ୍ତେ ଏକାବେଳକେ ମୁଗ୍ଧହେଲେ; ପରଶେଷରେ ଯେତେବେଳେ କେତେ ଗୋଟା ପ୍ରଶ୍ନଦ୍ୱାରା ତାହାଙ୍କର ବଦ୍ୟା ଓ ବଦ୍ୟାଗମର ଉପାୟ ସବଶେଷ ଅବଗତ ହେଲେ ତେତେବେଳେ ସେମାନେ ବାକ୍ପଥାତୀତ ବସ୍ମୟ ଓ ସନ୍ତୋଷ ସାଗରରେ ନମଗ୍ନ ହେଲେ । ସର୍ବଜ୍ୟେଷ୍ଠ ରାଜକୁମାର ତାହାଙ୍କୁ କହଲେ ତୁମ୍ଭେ ଚଜସଂସାରକୁ ଗୃଲ ଆମ୍ଭେ ତୁମ୍ଭଙ୍କୁ ଉତ୍ତମ

କର୍ମରେ ନିଯୁକ୍ତ କରନ୍ତୁ । ଡୁବାଲ କେତେ ୨ ପୁସ୍ତକରେ ପଢ଼ିଥିଲେ ରାଜସଂସାର ସଂସ୍ରବରେ ମନୁଷ୍ୟର ଧର୍ମଭ୍ରଂଶ ହୁଅଇ ଏବଂ ନାନାସ୍ଥଳେ ମଧ୍ୟ ଦେଖିଥିଲେ ନୀଚ ଲୋକର ଅନୁଚରମାନେ ପ୍ରାୟ ଲମ୍ପଟ ଓ କଳହପ୍ରିୟ । ଅତଏବ ଅକପଟ ବାକ୍ୟରେ କହିଲେ ଆମ୍ଭର ରାଜସେବାରେ ଅଭିଳାଷ ନାହିଁ; ବରଞ୍ଚ ଚିରକାଳ ଅରଣ୍ୟରେ ରହି ଗୋରୁ ଚରାଇ ନିରୁଦ୍‌ବେଗରେ ଜୀବନକ୍ଷେପଣ କରିବୁଁ । ଆମ୍ଭେ ଏହି ଅବସ୍ଥାରେ ସମ୍ପୂର୍ଣ୍ଣ ସୁଖୀ ଅଛୁଁ । ମାତ୍ର ଏହା ମଧ୍ୟ କହିଲେ ଯଦି ଆପଣ ଆମ୍ଭର ଅପୂର୍ବ ୨ ପୁସ୍ତକ ପାଠ ଓ ସମସ୍ତ ବିଦ୍ୟା ଓ ଜ୍ଞାନ ଲାଭର ସୁଯୋଗ କରି ଦେବେ ତେବେ ଆମ୍ଭେ ଆପଣଙ୍କର ଅଥବା ଯେ କୌଣସି ଲୋକର ସମଭିବ୍ୟାହରରେ ହୋଇ ଯିବାକୁ ପ୍ରସ୍ତୁତ ଅଛୁଁ ।

ରାଜକୁମାର ଏହି ଉତ୍ତର ଶୁଣି ଅତ୍ୟନ୍ତ ସନ୍ତୁଷ୍ଟ ହେଲେ; ଏବଂ ରାଜଧାନୀକୁ ପ୍ରତ୍ୟାଗମନ ପୂର୍ବକ, ଡୁବାଲର ଯଥାନିୟମରେ ସବୁ ପଣ୍ଡିତ ଓ ସଦୁପଦେଶକର ନିକଟରେ ବିଦ୍ୟାଧ୍ୟୟନ ସାଧନ ନିମନ୍ତେ ସ୍ୱୀୟ ଜନକର ସମ୍ମତି ନେଇ ପୋଣ୍ଟେମୌସନର ଯେସୁଇଟମାନଙ୍କର ସଂସ୍ଥାପିତ ବିଦ୍ୟାଳୟକୁ ତାହାଙ୍କୁ ପଠାଇ ଦେଲେ ।

ଡୁବାଲ ସେଠାରେ ଦୁଇ ବରଷ ଅବସ୍ଥିତି କରି ଜ୍ୟୋତିଷ ଭୂଗୋଳ ପୁରାବୃତ୍ତ ପୌରାଣିକ ବିଷୟ ସକଳ ଅଧ୍ୟୟନ କଲେ । ତଦନନ୍ତର ୧୭୧୮ ସାଲ ଶେଷ ଡିଉକର ପାରିସଯାତ୍ରା ସମୟରେ ତଦୀୟ ଅନୁମତି ଗ୍ରହଣ କରି ତାହାଙ୍କ ସଙ୍ଗରେ ଗମନ କଲେ ; ତାହାଙ୍କ ଗମନର ଅଭିପ୍ରାୟ ଏହି ଯେ ତତ୍ରତ୍ୟ ଅଧ୍ୟାପକମାନଙ୍କ ନିକଟରେ ଶିକ୍ଷାପ୍ରାପ୍ତ ହୋଇ ପାରିବେ । ଅନନ୍ତର ପରବରଷ ସେ ସ୍ଥାନରୁ ଲୁନିବିଲକୁ ପ୍ରତ୍ୟାଗମନ କଲେ, ଡିଉକ ମହୋଦୟ ତାହାଙ୍କୁ ସହସ୍ର ମୁଦ୍ରା ବେତନରେ ଆପଣାର ପୁସ୍ତକାଳୟର ଅଧ୍ୟକ୍ଷ ଓ ସାତ ଶଯ୍ୟ [ହ୍ନ] ଟଙ୍କା ବେତନରେ ବିଦ୍ୟାଳୟର ପୁରାବୃତ୍ତ ଅଧ୍ୟାପକ ପଦରେ ନିଯୁକ୍ତ କଲେ ଏବଂ କୌଣସି ନିୟମର ପରତନ୍ତ୍ର ନ ହୋଇ ସ୍ୱଚ୍ଛନ୍ଦେ ରାଜାଳୟରେ ବାସ କରିବା ପାଇଁ ଅନୁମତି ଦେଲେ । ସେ ପୁରାବୃତ୍ତ ବିଷୟରେ ଯେଉଁ ଉପଦେଶ ଦେବାକୁ ଲାଗିଲେ, ସେଥିରେ ତାହାଙ୍କର ଏମନ୍ତ ସୁଖ୍ୟାତି ହେଲା ଯେ, ଅନେକାନେକ ବୈଦେଶିକମାନେ ଶୁଶ୍ରୂଷାପରବଶ ହୋଇ ଲୁନିବିଲକୁ ଆସିବାକୁ ଲାଗିଲେ ।

ଡୁବାଲ ସ୍ୱଭାବରେ ଅତି ବିନୀତ ଓ ନମ୍ର ଥିଲେ । ସେ ଆପଣାର ପୂର୍ବତନ ହୀନ ଅବସ୍ଥାର କଥା ଉତ୍ଥାପିତ ହେଲେ ତଦୁପଲକ୍ଷରେ କିଞ୍ଚିନ୍ମାତ୍ର ଶଙ୍କା ଲଜ୍ଜିତ ବା କ୍ଷୁବ୍ଧ ନ ହୋଇ ଏବଂ ସେହି ଅବସ୍ଥାରେ ଯେ, ମନର ସ୍ୱଚ୍ଛନ୍ଦରେ କାଳଯାପନ କରୁଥିଲେ ଓ କ୍ରମଶେ ୨ ଜ୍ଞାନର ଉପଚୟ ସହକାରରେ ଅନ୍ତଃକରଣ ମଧ୍ୟରେ

ଯେ ନବ ଭାବୋଦୟ ହୋଇଥିଲା ସେହି ସମସ୍ତ ବର୍ଣ୍ଣନା କରି ଅପର୍ଯ୍ୟାପ୍ତ ପ୍ରୀତି ପ୍ରାପ୍ତ ହୁଅନ୍ତି ।

ସେ ପ୍ରଥମ ସଙ୍ଗୃହୀତ ବହୁଳ ଅର୍ଥଦ୍ୱାରା ମେଣ୍ଟ ଏନର ଆଶ୍ରମ ପୁନର୍ନିର୍ମାଣ କରି ଦେଲେ ଏବଂ ସେଠାରେ ଆପଣା ନିମନ୍ତେ ଏକ ଗୃହ ନିର୍ମାଣ କରାଇଲେ । ଅନନ୍ତର ଯେ ତରୁତଳରେ ଉପବିଷ୍ଟ ହୋଇ ରାଜକୁମାରଗଣ ଓ ସେମାନଙ୍କ ଅଧ୍ୟାପକଗଣର ସହିତ ଯେରୂପ କଥୋପକଥନ କରିଥିଲେ, କୌଣସି ନିପୁଣତର ଶିଳ୍ପକର ଦ୍ୱାରା ସେ ଅବସ୍ଥାଦ୍ୟୋତକ ଏକ ଆଲେଖ୍ୟ ପ୍ରସ୍ତୁତ କରାଇଲେ ଏବଂ ଡିଉକର ସମ୍ମତି ପ୍ରାପ୍ତ ହୋଇ ସ୍ୱପ୍ରତ୍ୟବେକ୍ଷିତ ପୁସ୍ତକାଳୟରେ ସ୍ଥାପନ କଲେ । କିଛି ଦିନ ଉତ୍ତାରେ ଜନ୍ମଭୂମି ଦର୍ଶନ ବାସନାପରବଶ ହୋଇ ସେସ୍ଥାନକୁ ଗମନ କଲେ । ଏବଂ ଯେଉଁ ଦିନରେ ଜନ୍ମଗ୍ରହଣ କରିଥିଲେ ତାହା ତଦ୍ଦେଶୀୟ ଶିକ୍ଷକର ବ୍ୟବହାର ନିମନ୍ତେ ପ୍ରଶ[ଶ]ସ୍ତ ରୂପେ ନିର୍ମାଣ କରାଇ ଦେଲେ । ଆଉ ଗ୍ରାମ ଲୋକ-ମାନଙ୍କର ଜଳକଷ୍ଟ ନିବାରଣ ନିମନ୍ତେ ଅନେକ କୂପ ଖୋଳାଇ ଦେଲେ ।

୧୭୩୮ ସାଲରେ ଡିଉକର ମୃତ୍ୟୁ ପର ତଦୀୟ ଉତ୍ତରାଧିକାରୀ ଲୋରେନର ବିନିମୟରେ ଟସ୍କାନିର ଆଧିପତ୍ୟ ଗ୍ରହଣ କଲେ ରାଜକୀୟ ପୁସ୍ତକାଳୟ ଫୋରେନସ ନଗରକୁ ନୀତ ହେଲା । ଡୁବାଲ ସେ ସ୍ଥାନରେ ଶୁଦ୍ଧା ପୂର୍ବପରି ପୁସ୍ତକାଧ୍ୟକ୍ଷର କାର୍ଯ୍ୟ ନିର୍ବାହ କରିବାକୁ ଲଗିଲେ । ତାହାଙ୍କର ଅଭିନବ ପ୍ରଭୁ ହଙ୍ଗରି ରାଜ୍ଞୀର ପାଣିଗ୍ରହଣଦ୍ୱାରା ଅତ୍ୟୁନ୍ନତ ସମ୍ରାଟ ପଦ ପ୍ରାପ୍ତ ହୋଇ, ବହୁକାଳର ପୁରୁଣା ଓ ନୂଆ ଟଙ୍କା ଓ ପୃଥିବୀର ଅନ୍ୟାନ୍ୟ ଭାଗ ପ୍ରଚଳିତ ସକାଶେ ଟଙ୍କା ସଂଗ୍ରହ କରିବାକୁ ବାସନା କଲେ । ଡୁବାଲର ଟଙ୍କ[ା]ବିଜ୍ଞାନ ବିଦ୍ୟାରେ ଅତ୍ୟନ୍ତ ଅନୁରାଗ ଥିଲା । ଅତଏବ ତାହାଙ୍କୁ ଉକ୍ତ ଟଙ୍କାଳୟର ଅଧ୍ୟକ୍ଷ ନିଯୁକ୍ତ କଲେ । ଏବଂ ରାଜପଲ୍ଲୀ ମଧ୍ୟରେ ରାଜକୀୟ ପ୍ରାସାଦର ଅଦୂରେ ତାହାଙ୍କର ବାସସ୍ଥାନ ନିର୍ଦ୍ଦିଷ୍ଟ କରି ଦେଲେ । ଡୁବାଲ ପ୍ରାୟ ସପ୍ତାହ ମଧ୍ୟରେ ଥରେ ରାଜା ଓ ରାଜମହିଷୀ ସହ ଭୋଜନ କରନ୍ତି ।

ଏହି ରୂପେ ଅବସ୍ଥାର ପରିବର୍ତ୍ତି ହେଲେ ହେଁ ତାହାଙ୍କର ସ୍ୱଭାବ ଓ ଚରିତ୍ରର କିଞ୍ଚିନ୍ମାତ୍ର ପରିବର୍ତ୍ତି ହେଲା ନାହିଁ । ଇମ୍ପେରିଆଲ ଏକ ବହୁଲୋକସମ୍ପର୍କୀୟ ନଗରରେ ରହି ଶୁଦ୍ଧା, ସେ ଲୋରେନର ଅରଣ୍ୟରେ ଯେପରି ଋଜୁସ୍ୱଭାବ ଓ ବିଦ୍ୟୋପାର୍ଜନରେ ଏକାଗ୍ର ଚିତ୍ତ ଥିଲେ, ଏସ୍ଥାନରେ ମଧ୍ୟ ସେହି ରୂପ ରହିଲେ । ରାଜା ଓ ରାଣୀ ତାହାଙ୍କର ରମଣୀୟ ଗୁଣଗ୍ରାମ ନିମନ୍ତେ ଅତ୍ୟନ୍ତ ପ୍ରୀତ ଓ ପ୍ରସନ୍ନ ଥିଲେ, ଏବଂ ତାହାର ପ୍ରମାଣ ସ୍ୱରୂପ ତାହାଙ୍କୁ ଆପଣା ପୁତ୍ରର ଉପାଧ୍ୟାୟ ପଦ ପ୍ରଦାନ କଲେ । ମାତ୍ର କୌଣସି କାରଣବଶରୁ ସେ ଏହି ସମ୍ମାନର ପଦ ଅସ୍ୱୀକାର

କଲେ । ରାଜସଂସାରକୁ ତାହାଙ୍କର ଗତିବିଧି ଏତେ ଅଳ୍ପ ଥିଲା ଯେ, କେହି ୨ ରାଜକୁମାରୀଙ୍କୁ ସେ କେତେବେଳେ ଦେଖି ନାହାନ୍ତି । ତେଣୁ ସେ ସେମାନଙ୍କୁ ଚିହ୍ନନ୍ତି ନାହିଁ । ପରେ କୌଣସି ସମୟରେ ଏହି ବିଷୟର କଥା ଉଠିଲେ ଏକ ରାଜକୁମାର କହିଲେ, ଡ଼ୁବାଲ ଯେ ଆମ୍ଭ ଭଗ୍ନୀମାନଙ୍କୁ ଚିହ୍ନନ୍ତି ନାହିଁ, ଆମ୍ଭେ ଏକଥା ବଡ଼ ଆଶ୍ଚର୍ଯ୍ୟ ବୋଧ କରୁଁ ନାହୁଁ । କାରଣ ଆମ୍ଭ ଭଗ୍ନୀମାନେ ପୌରାଣିକ ପଦାର୍ଥ ନୁହନ୍ତି ।

ଦିନକରେ ସେ ଅନୁମତି ଗ୍ରହଣ ବ୍ୟତିରେକେ ଗୃହ ଯାଉଅଛନ୍ତି ଦେଖି, ସମ୍ରାଟ ପଚାରିଲେ, ଆପଣ କେଉଁଠାକୁ ଯାଉଅଛନ୍ତି ? ଡ଼ୁବାଲ କହିଲେ ଗ୍ରାବିଲର ଗୀତ ଶୁଣିବାକୁ, ନରପତି କହିଲେ, ସେ ତ ଭଲ ଗାଇ ପାରେ ନାହିଁ । ମା ଯଥାର୍ଥ ସେ ଭଲ ଗାଏ । ଡ଼ୁବାଲ କହିଲେ ଆମ୍ଭେ ମହିମାଙ୍କଠାରେ ବିନୟ ବାକ୍ୟରେ ପ୍ରାର୍ଥନା କରୁଅଛୁଁ ଏକଥା ଉଚ୍ଚ ସ୍ୱରରେ କହିବେ ନାହିଁ । ସମ୍ରାଟ ପଚାରିଲେ କାହିଁକି ? ଡ଼ୁବାଲ କହିଲେ, କାରଣ ଏହି ଯେ ଆପଣଙ୍କ ପକ୍ଷରେ ଏହା ଅତ୍ୟନ୍ତ ଆବଶ୍ୟକ ଯେ, ଯେମନ୍ତ ଆପଣଙ୍କ କଥାରେ ସମସ୍ତେ ବିଶ୍ୱାସ କରନ୍ତି; କିନ୍ତୁ ଏପରି କଥାରେ କେହି ବିଶ୍ୱାସ କରିବେ ନାହିଁ । ବାସ୍ତବ ଡ଼ୁବାଲ କୌଣସି ସମୟରେ ପ୍ରସାଦାକାଙ୍କ୍ଷୀ ବା ଚାଟୁକାର ଥିଲେ ନାହିଁ ।

ଏହି ମହାନୁଭବ ଧର୍ମାତ୍ମା ଜୀବନର ଶେଷ ଦଶା ସ୍ୱଚ୍ଛନ୍ଦରେ ଓ ସମ୍ମାନ ପୂର୍ବକ ଯାପନ କରି ୧୭୭୫ ସାଲ ଏକାଶୀତି ବରଷ ବୟଃକ୍ରମ ସମୟରେ ତନୁତ୍ୟାଗ କଲେ । ଯେମାନେ ଡ଼ୁବାଲକୁ ବିଶେଷ ରୂପେ ଜାଣନ୍ତି ଏତେବେଳେ ସେମାନେ ସମସ୍ତେ ତାହାଙ୍କର ଦେହତ୍ୟାଗ ବାର୍ତ୍ତା ଶୁଣି ଶୋକାଭିଭୂତ ହେଲେ । ଏମତରେଣ ନାମକ ତାହାଙ୍କର ଏକ ବାନ୍ଧବ ତାହାଙ୍କର ମୃତ୍ୟୁପରେ ତଲ୍ଲିଖିତ ସକଳ ଗ୍ରନ୍ଥ ସଂଗ୍ରହ କରି ଦୁଇ ଖଣ୍ଡ ପୁସ୍ତକରେ ମୁଦ୍ରିତ ଓ ପ୍ରଚାରିତ କଲେ । ମାସଲ ଏନ୍‌ଟୋନିୟା ହୋଲାହିକ୍ ନାମ୍ନୀ ସରଡେନିୟା ଦେଶୀୟା ଏକ ସୁଶିକ୍ଷିତା ଯୁବତୀ, ଦ୍ୱିତୀୟ କାଥରିନର ଶୟନାଗାରର ପରିଚାରିକା ଥିଲେ; ତାହାଙ୍କର ସହିତ ଶେଷ ତ୍ରୟୋଦଶ ବରଷ ଯେ ଲେଖାଲେଖି ଚଳିଥିଲା ସେ ସକଳ ମଧ୍ୟ ମୁଦ୍ରିତ ହେଲା । ସମସ୍ତେ ସ୍ୱୀକାର କରନ୍ତି ସେଥିରେ ଉଭୟ ପକ୍ଷର ଅସାଧାରଣ ବୁଦ୍ଧିନୈପୁଣ୍ୟ ପ୍ରକାଶ ପାଇଅଛି । ବୃଦ୍ଧ ବୟସରେ ରୂପବତୀ ଯୁବତୀମାନଙ୍କୁ ପ୍ରିୟ ବିବି ବୋଲି ସମ୍ବୋଧନ କରିବା ଦୂଷଣାବହ ନୁହଇ; ଏହି କ୍ରମରେ ସେ ମସ୍କୋର ରମଣୀ ଓ ଆଉ ୨ ଯେଉଁ ଯେଉଁ କାମିନୀମାନଙ୍କୁ ଭଲ ପାଉଥିଲେ ସମସ୍ତଙ୍କୁ ସେହି ବାକ୍ୟରେ ସମ୍ବୋଧନ କରୁଥିଲେ ।

ଏହି ସକଳ ଦେଖି ଶୁଣି ଯଦି ବୋଧ ହୋଇ ପାରେ ଡ୍ରୁବାଲ କାମିନୀ-ଗଣର ସହବାସରେ ପରାଙ୍ମୁଖ ଥିଲେ ନାହିଁ ମାତ୍ର ସେ ସେମାନଙ୍କ ମନୋରଞ୍ଜନ ନିମନ୍ତେ କେତେବେଳେ ପରିଚ୍ଛଦ ପାରିପାଟୀର ଚେଷ୍ଟା କରନ୍ତି ନାହିଁ । ସର୍ବଦା କୃଷକମାନଙ୍କ ପରି ଗୁଲନ୍ତି ଓ ସର୍ବଦା ପିଙ୍ଗଳ ଅଙ୍ଗାବରଣ ଓ କୃଷ୍ଣବର୍ଣ୍ଣ ମୋଜା ଚରଣାବରଣ କରନ୍ତି; ଏବଂ ଲୌହ କଣ୍ଟକାବୃତ ସ୍ଥୂଳ ଉପାନହ ଧାରଣ କରନ୍ତି; ସେ ଯେ ପରିଚ୍ଛଦ ପରିପାଟୀ ବିଷୟରେ ଅନାଦର କରନ୍ତି ତାହା କୌଣସି ରୂପେ କୃତ୍ରିମ ନୁହଇ । ତାହାଙ୍କ ଜୀବନର ପୂର୍ବାପର ଅବେକ୍ଷଣ କଲେ; ସ୍ପଷ୍ଟ ବୋଧ ହୁଅଇ ଯେ କେବଳ ନିର୍ମଳ ଜ୍ଞାନାଲୋକ ସମ୍ଭୂତ ନିଜ ସ୍ୱଭାବ ହେତୁରୁ । ଏହି ପରି ହୁଅଇ । ଏହି ବିଷୟରେ ଏକ ଉଦାହରଣ ପ୍ରଦର୍ଶିତ ହେଲେ ପର୍ଯ୍ୟାପ୍ତ ହେବ । ତାହାଙ୍କର ଏକ କିଙ୍କର ଥିଲା, ସେ ତାହାକୁ ଦାସ ପରି ଜ୍ଞାନ ନ କରି ବନ୍ଧୁ ପରି ଗଣନା କରନ୍ତି । ସେ ଲୋକ ବିବାହିତ ପୁରୁଷ; ଏଥି ପାଇଁ ସେ ପ୍ରତିଦିନ ସନ୍ଧ୍ୟା ସମୟରେ ତାହାକୁ ଗୃହଗମନର ଅନୁମତି ଦିଅନ୍ତି ।

ଡ୍ରୁବାଲ ସ୍ୱୀୟ ଅସାଧାରଣ ପରିଶ୍ରମ ଓ ଅଧ୍ୟବସାୟ ମାତ୍ର ସହାୟ କରି କ୍ରମଶଃ ଅନେକବିଧ ଜ୍ଞାନୋପାର୍ଜ୍ଜନଦ୍ୱାରା ସେ ସମୟର ପ୍ରାୟ ସକଳ ଲୋକଠାରୁ ସମଧିକ ବିଦ୍ୱାନ ଥିଲେ । ଆଉ ରାଜସଂସାରରେ ବ୍ୟାପକ କାଳ ଅବସ୍ଥିତି କଲେ ମନୁଷ୍ୟ ମାତ୍ରର ପ୍ରାୟ ଆତ୍ମଶ୍ଲାଘା ଓ ଦୁଷ୍ପ୍ରବୃତ୍ତିଶକ୍ତିର ପରତନ୍ତ୍ର ହୁଅଇ; ମାତ୍ର ସେ ସେଠାରେ ଅର୍ଦ୍ଧଶତାବ୍ଦୀର ଅଧିକ କାଳ ଯାପନ କରିଥିଲେ ତଥାପି ଅତିଦୀର୍ଘ ଜୀବନର ଅନ୍ତିମ ସମୟ ପର୍ଯ୍ୟନ୍ତେ ଏକ ମୁହୂର୍ତ୍ତି ନିମନ୍ତେ ଶୁଦ୍ଧ ଚରିତର ନିର୍ମଳତା ବିଷୟରେ ଲୋକେନ ଅବସ୍ଥାନ କାଳର ଚଞ୍ଚଳ ଭାବ ପରିତ୍ୟାଗ କରି ନାହାନ୍ତି । ତାହାଙ୍କର ପୂର୍ବତନ ହୀନ ଅବସ୍ଥାର ଦୁଃସହ କ୍ଳେଶ ପ୍ରପଞ୍ଚ ମାତ୍ର ଅନ୍ତର୍ହିତ ହୋଇଥିଲା, ଏମନ୍ତ ନୁହଇ, ସରଳ ହୃଦୟତା, ଯଦୃଚ୍ଛା ଲାଭ ସନ୍ତୋଷତା ଓ ପ୍ରଶାନ୍ତ ଚିତ୍ତତା ଅନ୍ତିମ କାଳ ପର୍ଯ୍ୟନ୍ତେ ଅବିକୃତ ଥିଲା ।



# ଟାମସ ଜେନ୍‌କିନ୍‌ସ

ଏତେବେଳେ ଆମ୍ଭେମାନେ ଏକ ଅଦ୍ଭୁତ ବ୍ୟାପାର ଲେଖିବାକୁ ପ୍ରବୃତ୍ତ ହେଉଅଛୁଁ । ସେ ଘଟଣା ଦୂର ଦେଶରେ ବା ବହୁଦିନ ପୂର୍ବରେ ଘଟିଥିଲେ ତାହା ବିଶ୍ୱାସ ଜନ୍ମିବାର ସମ୍ଭାବନା ଥିଲା ନାହିଁ । ଏବଂ ବୋଧ ହୁଅଇ ଉକ୍ତ କାରଣବଶରୁ ଆମ୍ଭେମାନେ ଏ ବିଷୟ ଲିପିବଦ୍ଧ ଓ ପ୍ରଚାରିତ କରିବାକୁ ଉଦ୍ୟତ ହୁଅନ୍ତୁ ନାହିଁ । କିନ୍ତୁ ବର୍ତ୍ତମାନ ବିଷୟ ଅତି ସନ୍ନିହିତ କାଳରେ ଘଟିଅଛି । ଅତଏବ କୌଣସି ବିଷୟ ଅପ୍ରାମାଣିକ ବୋଧ ହେଲେ ଅନାୟାସରେ ପ୍ରାମାଣ୍ୟ ସଂସ୍ଥାପନ କରି ଯାଇପରେ; ଏଥିପାଇଁ ଆମ୍ଭେମାନେ ଅସଙ୍କୁଚିତ ଚିତ୍ତରେ ଏ ବିଷୟ ପ୍ରଚାର କରୁଅଛୁଁ ।

ଟାମସ ଜେନ୍‌କିନ୍‌ସ ଆଫ୍ରିକା ଦେଶୀୟ କୌଣସି ରାଜାର ପୁତ୍ର । ତାହାଙ୍କର ଆକାର କାଫ୍ରିର ସମ୍ପୂର୍ଣ୍ଣ ଲକ୍ଷଣୋପେତ ଥିଲା । ତାହାଙ୍କର ପିତା ବିଖ୍ୟାତ ଗିନି ଉପକୂଳର ଅନ୍ତର୍ଗତ ଲିଟିଲ୍ କେପ ମୌଣ୍ଟ ସଂଜ୍ଞିତ ସ୍ଥାନ ଓ ତନ୍ନିକଟବର୍ତ୍ତୀ ଜନପଦ ଅନେକ ଅଂଶର ଅଧିପତି ଥିଲେ । ଏହି ଉପକୂଳରେ ବ୍ରିଟେନୀୟ ସାଂଯାତ୍ରିକମାନେ ଦାସ କ୍ରୟ କରିବା ନିମନ୍ତେ ସର୍ବଦା ଗତାୟାତ କରନ୍ତି । କାଫ୍ରି ରାଜ ଶରୀରଗତ କୌଣସି ବୈଲକ୍ଷଣ୍ୟ ପ୍ରଯୁକ୍ତ ବ୍ରିଟେନୀୟମାନଙ୍କ ନିକଟରେ କୁକୁଟାକ୍ଷ ନାମରେ ବିଖ୍ୟାତ ଥିଲେ । ଇଉରୋପୀୟମାନେ ସଭ୍ୟତା ଓ ବିଦ୍ୟାପ୍ରଭାବରେ ବାଣିଜ୍ୟ ବିଷୟରେ କାଫ୍ରି ଜାତିଠାରୁ ଅନେକ ଉତ୍କୃଷ୍ଟ ଇହା ପ୍ରତ୍ୟକ୍ଷ କରି ସେ ଆପଣା ଜ୍ୟେଷ୍ଠ ପୁତ୍ରକୁ ବିଦ୍ୟାନୁଶୀଳନ ନିମନ୍ତେ ବ୍ରିଟେନକୁ ପଠାଇବାର ନିଶ୍ଚୟ କଲେ । ସ୍କଟଲଣ୍ଡ ଅନ୍ତର୍ଗତ ହାଉଇକ ପ୍ରଦେଶୀୟ କାପ୍ତେନ ସ୍ୱାନ୍‌ଷ୍ଟନ ଏହି ଉପକୂଳକୁ ଆସି ହସ୍ତିଦନ୍ତ, ସ୍ୱର୍ଣ୍ଣରେଣୁ ପ୍ରଭୃତି କ୍ରୟ କରନ୍ତି । କାଫ୍ରି ରାଜା ତାହାଙ୍କ ସହିତ ଏହି ନିୟମ ସ୍ଥିର କଲେ ଯେ, ଆପଣ ଆମ୍ଭ ପୁତ୍ରକୁ ଯେବେ ସ୍ୱଦେଶକୁ ନେଇ ଯାଇ କିଛି ଦିନ ଉତ୍ତମରେ ସୁଶିକ୍ଷିତ କରି ଆଣି ଦେବେ, ତେବେ ଆମ୍ଭେ ଏତଦ୍ଦେଶୀୟ ପଣ୍ୟ ବିଷୟରେ ଆପଣଙ୍କ ପକ୍ଷରେ ବିଶେଷ ବିଚାର କରିବୁଁ ।

ଏହି ବାଳକ ଯେ ରୂପେ ସ୍ୱାନ୍‌ଷ୍ଟନ ହସ୍ତକୁ ନୀତ ହେଲେ ତାହା ତାହାଙ୍କର ଅନ୍ତଃକରଣରେ ଜାଗରୂକ ଥିଲା । ପ୍ରସ୍ଥାନ ଦିବସରେ ତାହାଙ୍କର ପିତା ମାତା ଥୋକାଏ ହୃଷ୍ଟକାୟ ମହାମାତ୍ର ସଙ୍ଗରେ ନେଇ ଉପକୂଳ ସନ୍ନିହିତ ହରିତ

ପ୍ରଦେଶର ପ୍ରାନ୍ତଭାଗରେ ଉପସ୍ଥିତ ହେଲେ । ତାହାଙ୍କର ଜନନୀ ରୋଦନ କରିବାକୁ ଲାଗିଲେ । ସ୍ୱାନ୍‌ଷ୍ଟନ ଧର୍ମପ୍ରମାଣ ଅଙ୍ଗୀକାର କରି କହିଲେ, ଆପଣମାନଙ୍କର ପୁତ୍ର ଯେତେ ପାରିବେ ତେତେ ଶିକ୍ଷାଇ କେତେକ ବରଷ ବାଦ ଆଣିଦେବୁଁ । ଅନନ୍ତର ସେହି ବାଳକ ମୋତପର ଆଣି [ନି]ତ ହେଲେ । ଏବଂ ପୋତପତି ଆପଣାର ଇଚ୍ଛା ଅନୁସାରେ ତାହାଙ୍କର ନାମ ଟାମସ ଜେନ୍‌କନ୍‌ସ ରଖିଲେ ।

ସ୍ୱାନ୍‌ଷ୍ଟନ ଜେନ୍‌କନସ୍‌କୁ ହାଉର୍ଯ୍ୟିକକୁ ଆଣି ଆପଣା ପ୍ରତିଜ୍ଞା ପାଳନର ଯଥୋଚିତ ଉପାୟ କରୁଅଛନ୍ତି ଏମନ୍ତ ସମୟରେ ଦୁର୍ଦ୍ଦୈବ ହେତୁରୁ କାଳଗ୍ରାସରେ ପତିତ ହେଲେ । ଏମନ୍ତ ଦୁର୍ଘଟଣା ଘଟିଲେ କି ହେବ ତାହାର ପ୍ରତିବିଧାନ କରି ନ ଥିବାରୁ ଜେନ୍‌କନ୍‌ସର କେବଳ ବିଦ୍ୟା ଉପାର୍ଯ୍ୟ[ର୍ଜ]ନର ପ୍ରତିବନ୍ଧକ ହେଲା ଏମନ୍ତ ନୁହଇ ଭରଣ ପୋଷଣର ମଧ୍ୟ ବିଶେଷ ବ୍ୟାଘାତ ଘଟିବାକୁ ଲାଗିଲା । ହାଉର୍ଯ୍ୟିକର ଅନ୍ତର୍ଗତ ଚୌନଇନ ନାମକ ପାନ୍ଥନିବାସରେ ସ୍ୱାନ୍‌ଷ୍ଟନର ମୃତ୍ୟୁ ହେଲା । ସେଠାରେ ଜେନ୍‌କନ୍‌ସ ସ୍କଟଲଣ୍ଡ ଦେଶୀୟ ଦୁରନ୍ତ ଶୀତରେ ମ୍ରିୟମାନ ହୋଇ ଶ୍ରଦ୍ଧା ସାଧ୍ୟାନୁସାରେ ତାହାଙ୍କର ଶୁଶ୍ରୂଷା କରିବାକୁ ତ୍ରୁଟି କରି ନାହାନ୍ତି । ସ୍ୱାନ୍‌ଷ୍ଟନ ମରଣ ଉତ୍ତାରେ ସେ ଯେ କପର୍ଯ୍ୟନ୍ତ ଶୀତଭୋଗ କରିଥିଲେ ତାହା ବର୍ଣ୍ଣନାତୀତ । ପରିଶେଷେ ସେହି ସ୍ଥାନର ଅଧିକାରିଣୀ ବିବି ଚୌନ, ପାକଶାଳାର ରାଶୀକୃତ ପ୍ରଜ୍ୱଳିତ ଜଳନ ସନ୍ନିଧାନକୁ ତାହାଙ୍କୁ ଆଣିଲେ । ଘରର ସକଳ ସ୍ଥାନଠାରୁ ସେହି ସ୍ଥାନ ତାହାଙ୍କର ବାସସ୍ଥାନର ଅଧିକ ଉପଯୁକ୍ତ ଥିଲା । ସେ, ସେହି ବିବିର ସେହି ଦୟାର କାର୍ଯ୍ୟ ଚିରକାଳ ସ୍ମରଣ କରନ୍ତି ।

ଜେନ୍‌କନ୍‌ସ ଏହି ପାନ୍ଥନିବାସ ଅବସ୍ଥିତିର କିଛି କାଳ ଉତ୍ତାରେ ମୃତ ସ୍ୱାନ୍‌ଷ୍ଟନର କୁଟୁମ୍ବ ଟିବିୟଟ୍‌ହେଡ଼ନିବାସୀ ଏକ କୃଷକ ତଦୀୟ ସମସ୍ତ ଭାର ଗ୍ରହଣ କରି, ତାହାଙ୍କୁ ଆପଣା ଘରକୁ ନେଇ ଗଲେ । ସେଠାରେ ସେ ପଶୁପକ୍ଷୀ ଓ ହଂସ, କୁକୁଡ଼ା ପ୍ରଭୃତି ଗ୍ରାମ୍ୟ ବିହଙ୍ଗଗଣର ରକ୍ଷଣାବେକ୍ଷଣ ପ୍ରଭୃତି ନିକୃଷ୍ଟ କର୍ମ କରିବାକୁ ଲାଗିଲେ । ପାନ୍ଥନିବାସରୁ ଗମନ ସମୟରେ ସେ ଇଂରାଜୀ ବିଦ୍ୟାର ଏକ ବର୍ଣ୍ଣ ଶ୍ରଦ୍ଧା ଶିଖିଥିଲେ ନାହିଁ । ମାତ୍ର ଏହି ସ୍ଥାନକୁ ଆସି ସେହି ଦେଶର ପ୍ରଚଳିତ ଭାଷା ଉଚ୍ଚାରଣର ସକଳ ନିୟମ ଶିକ୍ଷା କଲେ । ସେ ସେହି ଲୋକଙ୍କ ଗୃହରେ ଯେତେ କାଳ ରହିଲେ, ତହିଁରୁ କିଛି ଦିନ ରଖୁଆଳ କର୍ମ କଲେ । ତାହାବାଦ, ଏକ ପ୍ରକାର ତୃଣ ଶୋକେଟ ପୂର୍ଣ୍ଣ କରି ହାଉର୍ଯ୍ୟିକକୁ ବିକ୍ରୟ କରିବାକୁ ଯାଆନ୍ତି । ଏହି କର୍ମ ଏମନ୍ତ ଉତ୍ତମ ରୂପରେ ନିର୍ବାହ କରନ୍ତି ଯେ ସେଥିରେ ଗୃହସ୍ୱାମୀ ଅତ୍ୟନ୍ତ ସନ୍ତୁଷ୍ଟ ଥିଲେ ।

ଜେନ୍‌କିନ୍‌ସ ଦୃଢ଼ ଶରୀର ହେଲେ ଫଲନାସନବାସୀ ଲେଡ଼ଲ ନାମକ ଏକ ଲୋକ, କୌଣସି ଅନିର୍ଦ୍ଦିଷ୍ଟ କାରଣ ପ୍ରଯୁକ୍ତ ତାହାଙ୍କର ପ୍ରତି ସଦୟ ହୋଇ ସେହି ବୃଦ୍ଧସ୍ୱାମିନୀ ନିକଟରେ ପ୍ରାର୍ଥନା କରି ତାହାଙ୍କୁ ସ୍ୱାଳୟକୁ ନେଇ ଗଲେ; କ୍ଷୁଦ୍ରଶରୀର ଜେନ୍‌କିନ୍‌ସ ଫଲନାସକୁ ଆସି ସକଳ ପ୍ରକାର କର୍ମ କରିବାକୁ ଲାଗିଲେ। କେତେବେଳେ ରକ୍ଷୀଆଳ ହୁଅନ୍ତି, କେତେବେଳେ ମନ୍ଦୁରାରେ କର୍ମ କରନ୍ତି, ସେ ପ୍ରାୟ ସକଳ ପ୍ରକାର କର୍ମରେ ହସ୍ତାର୍ପଣ କରନ୍ତି। ତାହାଙ୍କର ଏହି ଏକ କର୍ମ ନିର୍ଦ୍ଦିଷ୍ଟ ଥିଲା ଯେ, ସକଳ ପ୍ରକାର ସମ୍ବାଦ ନେଇ ହାତ୍ରସ୍ଥିକଙ୍କୁ ଦେବାକୁ ହୁଅଇ। ଅତ୍ୟନ୍ତ ମେଧାଶକ୍ତି ଥିବାରୁ ସେ ଏହି କର୍ମରେ ବିଶେଷ ଉପଯୁକ୍ତ ଥିଲେ। କିନ୍ତୁ ଧନ ଉଆରେ ସେ ଲେଡ଼ଲର ଜଣେ ପ୍ରକୃତ କୃଷାଣ ହୋଇ ଉଠିଲେ।

ଏହି ସମୟରେ ତାହାଙ୍କର ବିଦ୍ୟାଶିକ୍ଷା ପାଇଁ ପ୍ରଥମ ଅନୁରାଗ ଜନ୍ମିଲା। ସେ ପ୍ରଥମରେ କିପରି ଶିକ୍ଷା କରିଥିଲେ ସେ ବିଷୟ ପ୍ରକାଶ ନାହିଁ। ବୋଧ ହୁଅଇ ଏହି ବାଳକର ବିଦ୍ୟାଶିକ୍ଷା ଅବଶ୍ୟ କର୍ତ୍ତବ୍ୟତା ବୋଲି ବୋଧ ଥିଲା। ଏବଂ ଏପରି ଦୁରବସ୍ଥାରେ ଯେତେ ଦୂର ହୋଇ ପରେ ପିତାର ମାନସ ପୂର୍ତ୍ତି କରିବା ନିମନ୍ତେ ସେ ଅତ୍ୟନ୍ତ ଉତ୍ସୁକ ଥିଲେ। ବୋଧ ହୁଏ ସେ ଲେଡ଼ଲର ସନ୍ତାନମାନଙ୍କର ବା ବୃନ୍ଦାବାସୀମାନଙ୍କ ନିକଟରେ ଶିକ୍ଷା ଆରମ୍ଭ କରିଥିଲେ। ଲେଡ଼ଲ ଅତି ଅଳ୍ପ ଦିନ ମଧ୍ୟରେ ଜେନ୍‌କିନ୍‌ସଙ୍କୁ ବର୍ଣ୍ଣିକାର ଶେଷ ଗ୍ରହଣ ବିଷୟରେ ଅତ୍ୟନ୍ତ ବ୍ୟଗ୍ର ଦେଖି ଅତିଶୟ ବିସ୍ମୟାବିଷ୍ଟ ହେଲେ। ଜେନ୍‌କିନ୍‌ସ ବର୍ଣ୍ଣ ଓ ବର୍ଣ୍ଣର ଶେଷ ସମ୍ମୁଖରେ ଦେଖିଲେ ତାହା ମନ୍ଦୁରା ଉପର ମଞ୍ଚାରେ ଲୁଚାଇ ରଖନ୍ତି। ଏହି ସକଳ ନେଇ ସେ କି କରନ୍ତି ଏହି ବିଷୟରେ ସମସ୍ତଙ୍କର ଅତ୍ୟନ୍ତ ସନ୍ଦେହ ଜନ୍ମିଲା। ଅତି ଶୀଘ୍ର ତଥାତ୍ୟ ଲୋକେ କୌତୂହଳାକ୍ରାନ୍ତ ହୋଇ ଜେନ୍‌କିନ୍‌ସ ବସାକୁ ଯାଇ କି କରନ୍ତି, ଏହି ବିଷୟ ଅନୁସନ୍ଧାନ କରିବାକୁ ଲାଗିଲେ। ମାତ୍ର ସମସ୍ତେ ଦେଖି ଚମତ୍କୃତ ହେଲେ ଯେ ସେହି ଦରିଦ୍ର ବାଳକ ଖଣ୍ଡେ ପୁସ୍ତକ ଓ ପ୍ରସ୍ତର ଫଳକ ନେଇ ଅକ୍ଷର ଦେଖିବାକୁ ଅଭ୍ୟାସ କରୁଅଛନ୍ତି। ଦେଖାଗଲା ଗୋଟାଏ ପୁରୁଣା ବୀଣାଯନ୍ତ୍ର ତାହାଙ୍କର ସମ୍ମୁଖରେ ଅଛି। ସେହି ବୀଣାଯନ୍ତ୍ର ପାଇଁ ତଳାସ୍ଥ ଅଶ୍ୱମାନଙ୍କୁ ଅଧିକ ସମୟ ରାତ୍ର ଅପୂର୍ବରେ ଯାପନ କରିବାକୁ ହୁଅଇ।

ଏହି ରୂପେ ବିଦ୍ୟାନୁଶୀଳନରେ ତାହାଙ୍କର ଅନୁରାଗ ପ୍ରକାଶ ହେବାରୁ ଲେଡ଼ଲ ତାହାଙ୍କୁ କୌଣସି ପଡ଼ୋଶୀ ସଂସ୍ଥାପିତ ବୈକାଳିକ ପାଠଶାଳାରେ ଅଧ୍ୟୟନ କରିବାକୁ ଅନୁମତି ଦେଲେ। ସେ, ସେ ସ୍ଥାନରେ ଅଳ୍ପ ଦିନ ମଧ୍ୟରେ ଏମନ୍ତ ବିଦ୍ୟୋପାର୍ଜ୍ଜନ କଲେ ଯେ, ସେହି ପ୍ରଦେଶର ସକଳ ଲୋକେ ଶୁଣି ଚମତ୍କୃତ ହେଲେ। କାରଣ ସେମାନଙ୍କର ଏପରି ବୋଧ ଥିଲା ନାହିଁ ଯେ କାର୍ଫିକାଠ

କୌଣସି ସମୟରେ ବିଦ୍ୟାର୍ଥୀ ହୋଇ ପାରିବେ । ଯାହା ହେଉ ତାଙ୍କ ଲେଡ଼ଲର କ୍ଷେତ୍ରସମ୍ବନ୍ଧୀୟ ମତ କର୍ମରେ ନିଯୁକ୍ତ ହେବାକୁ ହୁଅଇ ସତ୍ୟ ତଥାପି ସେ ଅବକାଶ ପାଇଲେ କ୍ରମେ ୨ ବିନାସାହାଯ୍ୟରେ ଲାଟିନ ଓ ଗ୍ରୀକ ଅଧ୍ୟୟନ କରିବାକୁ ଆରମ୍ଭ କଲେ । ଏକ ବାଳକ ସହିତ ତାହାଙ୍କର ବନ୍ଧୁତା ଥିଲା ସେହି ବାଳକ ଉକ୍ତ ଦୁଇ ଭାଷା ଅଧ୍ୟୟନ ନିମନ୍ତେ ଯେ ଯେ ପୁସ୍ତକ ଆବଶ୍ୟକ ତାହା ତାହାଙ୍କୁ ଦିଅନ୍ତି । ଲେଡଲ ଓ ତାହାଙ୍କର ଭାର୍ଯ୍ୟା ଦୁଇଜଣ ତାହାଙ୍କର ଇଷ୍ଟସିଦ୍ଧି ବିଷୟରେ ଯଥାଶକ୍ତି ସହାୟତା କରିଥିଲେ; କିନ୍ତୁ ନିକଟରେ ଲାଟିନ ବିଦ୍ୟାଳୟ ନ ଥିବାରୁ ସେମାନେ ତାହାଙ୍କର ଉକ୍ତ ଭାଷା ଅଧ୍ୟୟନ କରିବାର ଉତ୍ତମ ଉପାୟ ଓ ସୁଯୋଗ କରି ଦେଇ ପାରିଲେ ନାହିଁ ।

ଅନେକ ଲୋକ ଅନେକ ଥର ପ୍ରତ୍ୟକ୍ଷ କରି ଅଛନ୍ତି ଯେ ଲେଡ଼ଲର ସ୍ତ୍ରୀ ପୁରୁଷ ତାହାଙ୍କର ପ୍ରତି ଯେ ସୌଜନ୍ୟ ଦର୍ଶାଇଥିଲେ । ସେ ତାହା ସମ୍ମୁଖରେ ବର୍ଣ୍ଣନା ସମୟରେ ତାହାଙ୍କ ହୃଦୟ କୃତଜ୍ଞତା ପ୍ରବାହରେ ଉଚ୍ଛ୍ୱସିତ ଓ ନୟନଦ୍ୱୟ ବିଗଳିତ ବାଷ୍ପ ସଲିଳରେ ପ୍ଲାବିତ ହୁଅଇ । କିଛି ଦିନ ଉତ୍ତାରେ ଲାଟିନ ଓ ଗ୍ରୀକ ଭାଷାରେ ଏକ ପ୍ରକାର ବୋଧାଧିକାର ଜନ୍ମିଲେ, ସେ ଗଣିତବିଦ୍ୟା ଅଧ୍ୟୟନରେ ପ୍ରବୃତ୍ତ ହେଲେ ।

ଜେନ୍‌କନ୍‌ସ ଯେ ଏକ ଗ୍ରୀକ ଅଭିଧାନ କ୍ରୟ କରିଥିଲେ । ତାହା ତାହାଙ୍କର ଜୀବନଚରିତ ମଧ୍ୟରେ ଏକ ପ୍ରଧାନ ବ୍ୟାପାର ବୋଲି ପରିଗଣିତ ହୋଇଅଛି । ହାଭର୍ଫୋର୍ଡରେ କେତେ ଗୋଟିଏ ପୁସ୍ତକ ବିକ୍ରୟ ହେବ ଶୁଣି, ସେ ପୂର୍ବକଥିତ ବନ୍ଧୁଙ୍କ ସହିତ ସେଠାକୁ ଗମନ କଲେ ।

ସେ ଆପଣା ବେତନ ମଧ୍ୟରୁ ଛ ଟଙ୍କା ସଞ୍ଚୟ କରି ରଖିଥିଲେ । ଆଉ ତାହାଙ୍କର ସହଚର ମଧ୍ୟ ସ୍ୱୀକାର କଲେ, ଯଦି କୌଣସି ଆବଶ୍ୟକୀୟ ପୁସ୍ତକ କ୍ରୟ ନିମନ୍ତେ ଆଉ କିଛି ଅର୍ଥ ପାଇଁ ପ୍ରୟୋଜନ ତେବେ ଆମ୍ଭଠାରେ ବାର ଅଣା ଅଛି ଦେବୁଁ । ଜେନ୍‌କନ୍‌ସ ଏକ ଗ୍ରୀକ ଅଭିଧାନ ବିକ୍ରୟ ହେବାର ଦେଖି ଆପଣାର ଅଧିକ ପ୍ରୟୋଜନୀୟ ଜ୍ଞାନ କରି ନିଲାମ ଡାକିବାକୁ ଆରମ୍ଭ କଲେ । ସେହି ପୁସ୍ତକ କେବଳ ବିଜ୍ଞ ବିଦ୍ୟାର୍ଥୀର ପ୍ରୟୋଜନୋପଯୋଗୀ, ଅତ ସ୍ଥାନ ବେଶି ଜଣେ କାର୍ଫିକୁ ତାହା କିଣିବାର ପ୍ରତିଯୋଗିତା କରିବାର ଦେଖି, ଉପସ୍ଥିତ ସକଳ ଲୋକ ବିସ୍ମୟାପନ୍ନ ହେଲେ ।

ମନଫିଙ୍ଗ ନାମକ ଏକ ଲୋକର ସହିତ ଜେନ୍‌କନ୍‌ସ ସହଚର ସହିତ ଆଳାପ ଥିଲା । ସେ ଇଙ୍ଗିତଦ୍ୱାରା ତାହାଙ୍କୁ ଅହ୍ୱାନ କରି କୌତୁକାକୁଳିତ

ନିଅରେ ଏହି ଅଦ୍ଭୁତ ବ୍ୟାପାରର ରହସ୍ୟ ତାହାଙ୍କୁ ପଚାରିଲେ ବାଳକ ସବିଶେଷ ସକଳ ନିବେଦନ କଲେ । ତେତେବେଳେ ମନର୍କିଫ ସେମାନଙ୍କର ଛ ଟଙ୍କା ବାର ଅଣା ମାତ୍ର ସଂସ୍ଥାନ ଅବଗତ ହୋଇ କହିଲେ ତୁମ୍ଭର ଯେତେ ଦୂର ଇଚ୍ଛା ହୁଏ ମୂଲ୍ୟ ଡାକ, ଅକୁଳାନ ହେଲେ ଆମ୍ଭେ ଦାୟୀ ହେବୁଁ ।

ଜେନ୍ କିନ୍ସ୍; ଦୟାଳୁ ମନର୍କିଫର ଏହି ସାନୁଗ୍ରହ ପ୍ରସ୍ତାବର ବିଷୟ ଅବଗତ ଥିଲେ ନାହିଁ; ତେଣୁ ସେ ଆପଣମାନଙ୍କର ସଙ୍ଗତି ପର୍ଯ୍ୟନ୍ତେ ଡାକ ନିବୃତ୍ତ ହୋଇ ମଳିନ ମୁଖରେ କ୍ଷାନ୍ତ ହେବା ମାତ୍ର, ତାହାଙ୍କର ସହଚର ମୂଲ୍ୟ ଡାକିବାକୁ ଲାଗିଲେ । ଦରିଦ୍ର କାର୍ଫି ବାଳକ ତାହା ଦେଖି ଅତିଶୟ ବ୍ୟାକୁଳ ହୋଇ କହିଲେ; ବନ୍ଧୋ ! କିସ କରୁଅଛ ? ତୁମ୍ଭେ କି ଜାଣ ନାହିଁ ଆମ୍ଭମାନଙ୍କର କେତେ ଦୂର ମୂଲ୍ୟ ଓ ଶୁଳ୍କ ଦେବାର କ୍ଷମତା ଅଛି । କିନ୍ତୁ ସେହି ବାଳକ ତାହାଙ୍କର ସେହି ନିଷେଧ ବାକ୍ୟ ନ ଶୁଣି ପୁସ୍ତକ କ୍ରୟ କଲେ ଓ ତତ୍କ୍ଷଣାତ୍ ହୃଷ୍ଟ ଚିତ୍ତରେ ବନ୍ଧୁ ହସ୍ତରେ ସମର୍ପଣ କରି ତାହାଙ୍କର କ୍ଷୋଭ ନିବାରଣ କଲେ । ମନର୍କିଫ ମହାଶୟଙ୍କୁ ଏ ବିଷୟରେ କେବଳ ଆଠ ଅଣା ସାହାଯ୍ୟ କରିବାକୁ ହେଲା । ଜେନ୍ କିନ୍ସ ଆନନ୍ଦ ସାଗରରେ ମଗ୍ନ ହୋଇ ପୁସ୍ତକ ଘେନି ପ୍ରତ୍ୟାଗମନ କଲେ ।

କେହି ୨ ପଚାରି ପାରନ୍ତି ଯେ କାର୍ଫି ଜାତି ବୁଦ୍ଧିର ଅଦ୍ଭୁତ ଆଦର୍ଶ ସ୍ୱରୂପ ସେହି ସୁବୋଧ ବାଳକର ସ୍ୱଭାବ ଓ ଚରିତ୍ର କିପରି ଥିଲା ? ସେଥିରେ ଆମ୍ଭେମାନେ ଏକାବେଳେ ଏହି ଉତ୍ତର ଦେଇପାରୁଁ ଯେ, ଯେତେ ଦୂର ଉତ୍ତମ ହୋଇ ପାରେ । ଜେନ୍‌କିନ୍‌ସ ବିନୀତ, ନିରହଙ୍କୃତ ଓ ଦୁଷ୍ପ୍ରବୃତ୍ତିଶୂନ୍ୟ ଥିଲେ । ତାହାଙ୍କ ଆଚରଣ ଏମନ୍ତ ଅସାମାନ୍ୟ ସୌଜନ୍ୟ ବ୍ୟଞ୍ଜକ ଥିଲା, ଯେ ପରିଚିତ ଲୋକ ମାତ୍ରକେ ତାହାଙ୍କର ପ୍ରତି ସ୍ନେହ ଓ ଅନୁଗ୍ରହ କରନ୍ତି । ସେ ସେହି ଦେଶର ଲୋକରଞ୍ଜକ ମଧ୍ୟରେ ଜଣେ ଗଣିତ ହୋଇଥିଲେ । ସେ ଆପଣା କାର୍ଯ୍ୟ ନିର୍ବାହ ବିଷୟରେ କିଞ୍ଚିନ୍ମାତ୍ର ଶୁଦ୍ଧା ଆଳସ୍ୟ ବା ଔଦାସ୍ୟ କରନ୍ତି ନାହିଁ । ଏହି ନିମନ୍ତେ ତାହାଙ୍କର ଅଭିଭାବକମାନେ ଅତ୍ୟନ୍ତ ସମାଦର କରନ୍ତି । ଏବଂ ଜ୍ଞାନୋପାର୍ଜ୍ଜନ ବିଷୟରେ ତାହାଙ୍କର ଏତେ ଦୂର ଯତ୍ନ ଦେଖି ସକଳ ଲୋକ ମୁଗ୍ଧ ଥିଲେ । ତାହାଙ୍କର ସ୍ୱଦେଶଶ୍ଳାଘା ବିନ୍ଦୁ ବିସର୍ଗ ଶୁଦ୍ଧା ମନରେ ନ ଥିବା ସ୍କଟଲଣ୍ଡର ଦକ୍ଷିଣାଞ୍ଚଳସ୍ଥ ସାମାନ୍ୟ କୃଷକମାନଙ୍କ ସହିତ ଶରୀର ଗତ ବର୍ଣ୍ଣ ବ୍ୟତିରେକେ କୌଣସି ବିଷୟର ବିଭିନ୍ନତା ଥିଲା ନାହିଁ । କିନ୍ତୁ ଏହି ମାତ୍ର ବିଶେଷ ଯେ, ସେ ସେମାନଙ୍କର ପ୍ରାୟ ସକଳ ଲୋକଠାରୁ ସମଧିକ ବିଦ୍ୱାନ ଥିଲେ । ଏବଂ ବିଦ୍ୟାନୁଶୀଳନ ଦ୍ୱାରା ସମୟ ଯାପନ କରନ୍ତି । ଖ୍ରୀଷ୍ଟୋପଦିଷ୍ଟ ଧର୍ମରେ ତାହାଙ୍କର

ଅତି ଶ୍ରଦ୍ଧା ଥିଲା ଏବଂ ଧର୍ମସମ୍ବନ୍ଧୀୟ ପ୍ରତ୍ୟେକ ବିଧି ପ୍ରତିପାଳନରେ ସେ ଅତ୍ୟନ୍ତ ଅବହିତ ଥିଲେ । ଏହି ସକଳ ପର୍ଯ୍ୟାଲୋଚନା କଲେ ବୋଧ ହୁଏ ଜେନ୍‌କିନ୍‌ସ ଅତ୍ୟୁତ୍କୃଷ୍ଟ ଉପାଦାନରେ ନିର୍ମିତ । ଆଉ ସେ ବିଦ୍ୟାଲାଭ ନିମନ୍ତେ ଯେ ଅଶେଷ ପ୍ରକାର କ୍ଲେଶ ସ୍ୱୀକାର କରିଥିଲେ ତାହା ଗଣନା କଲେ ଶ୍ରଦ୍ଧା ସହିତ ଆହ୍ଲାଦିତ ହେବେ ସନ୍ଦେହ ନାହିଁ ।

ଜେନ୍‌କିନ୍‌ସର ବିଂଶତି ବର୍ଷ ବୟଃକ୍ରମ ସମୟରେ, ତଦ୍‌ବିଷୟ ହେତୁର ଏକ ପାଠଶାଳାରେ ଏକ ଶିକ୍ଷୟି[କ୍ଷି]କର ପଦଶୂନ୍ୟ ହେଲା । ଉକ୍ତ କୃଷକ ବହୁଳ ଜନପଦନିବାସୀଗଣର ଶିକ୍ଷା ନିମନ୍ତେ ଯେ ପାଠାଳୟ ଥିଲା ସେ ତାହାର ଶାଖା-ସ୍ୱରୂପ । ଏହି ବିଷୟ ଜେଷ୍ଟବର୍ଗର ଯାଜକଗଣର ଉପରେ ଭାର୍ପିତ ହେଲା ଯେ, ସେମାନେ କୌଣସି ଦିନରେ ହାଉସ୍ଟିକକୁ ଯାଇ କର୍ମାକାଙ୍କ୍ଷୀମାନଙ୍କର ପରୀକ୍ଷା କରି, ଅଧକ୍ଷମାନଙ୍କ ନିକଟକୁ ବିଜ୍ଞାପନୀ ପଠାଇବେ । ପରୀକ୍ଷା ଦିବସରେ ଫଳ-ନାସନର କୃଷ୍ଣକାୟ କୃଷକ ପୁସ୍ତକବିଡ଼ା କାଖରେ ଦେଇ ଅତିହୀନ ବେଶରେ ସେ ସ୍ଥାନରେ ଉପସ୍ଥିତ ହୋଇ ପରୀକ୍ଷାଦାନର ଅନୁମତି ପ୍ରାର୍ଥନା କଲେ । ପରୀକ୍ଷକମାନେ ତାଙ୍କୁ ପରୀକ୍ଷାଦାନରେ ଉଦ୍ୟତ ଦେଖି ଚମତ୍କୃତ ହେଲେ । ମାତ୍ର ତାହାଙ୍କର ସ୍ୱଭାବ ଚରିତ୍ର ଓ ବିଦ୍ୟା ବିଷୟ ପ୍ରଶଂସାପତ୍ର ଦେଖି ଅନ୍ୟାନ୍ୟ ୩।୪ ଜଣ ପରୀକ୍ଷାର୍ଥୀ ପରି ତାହାଙ୍କର ଶୁଦ୍ଧା ଯଥାନିୟମରେ ପରୀକ୍ଷା ଗ୍ରହଣ କରିବାକୁ ହେଲା, ଅସ୍ୱୀକାର କରି ପାରିଲେ ନାହିଁ । ପରୀକ୍ଷାରେ ସେ ଅନ୍ୟାନ୍ୟ ଲୋକଠାରୁ ଏମନ୍ତ ଉତ୍କୃଷ୍ଟ ହେଲେ ଯେ ପରୀକ୍ଷକମାନଙ୍କୁ ଉପସ୍ଥିତ ବ୍ୟାପାରରେ ତାହାଙ୍କୁ ସର୍ବଠାରୁ ଉପଯୁକ୍ତ ବୋଲି ଅଧକ୍ଷମାନଙ୍କ ନିକଟକୁ ବିଜ୍ଞାପନୀ ପଠାଇବାକୁ ହେଲା । ତେତେବେଳେ ଜେନ୍‌କିନ୍‌ସ ଜୟ ପ୍ରାପ୍ତ ହୋଇ ହର୍ଷୋତ୍‌ଫୁଲ୍ଲ ଲୋଚନରେ ଏହି ଆଲୋଚନା କରି ୨ ପ୍ରତ୍ୟାଗମନ କଲେ ଯେ ଏତେବେଳେ ଆମ୍ଭେ ଯେ ପଦରେ ନିଯୁକ୍ତ ହେବା ତାହା ପୂର୍ବ ୨ ସକଳ କର୍ମଠାରୁ ଉତ୍କୃଷ୍ଟ ଏବଂ ତହିଁରେ ବିଦ୍ୟୋପାର୍ଜ୍ଜନର ବିଶିଷ୍ଟ ରୂପ ସୁଯୋଗ ଓ ସଦୁପାୟ ହେବ । ମାତ୍ର କିଛି କାଳ ନିମନ୍ତେ ଜେନ୍‌କିନ୍‌ସର ଏହି ଅଭ୍ୟୁଦୟାଶା ପ୍ରତିହତ ହୋଇ କ୍ଷ୍ରର ହେଲା । ପରୀକ୍ଷକମାନଙ୍କର ବିଜ୍ଞାପନୀ ଯାଜକ-ମଣ୍ଡଳୀର ସମ୍ମୁଖରେ ଉପସ୍ଥି[ସ୍ଥି]ତ ହେଲେ, ସେମାନଙ୍କ ମଧ୍ୟରେ ଅଧିକାଂଶ ଲୋକ ତାଙ୍କୁ ଉପସ୍ଥିତ କର୍ମରେ ନିଯୁକ୍ତ କରିବା ଅଯୁକ୍ତ ବିବେଚନା କରି ଅନ୍ୟ ଏକ ଲୋକକୁ ସେହି କର୍ମରେ ନିଯୁକ୍ତ କଲେ । ତଦନୁସାରେ ସେ, ପରୀକ୍ଷାଦାନର ସକଳ ଫଳରୁ ବଞ୍ଚିତ ହୋଇ, ଜାତି ଓ ଅବସ୍ଥାର ଅପକର୍ଷ ନିମନ୍ତେ ଏପରି ଦୁରବସ୍ଥା ଘଟିଲା, ଏହି ମନସ୍ତାପରେ ମ୍ରିୟମାଣ ହୋଇ ରହିଲେ କିନ୍ତୁ ଯାଜକ-ମଣ୍ଡଳୀର ଏହି ଅବିଚାରରେ ସେ ଯେପରି ବିଷାଦ ଓ କ୍ଷୋଭ ପ୍ରାପ୍ତ ହୋଇଥିଲେ

ସୌଭାଗ୍ୟକ୍ରମରେ ବର୍ତ୍ତମାନ ବ୍ୟାପାରର ପ୍ରଧାନ ଉଦ୍ୟୋଗୀ ଲୋକଗଣ ତଦନୁରୂପ ଅସନ୍ତୁଷ୍ଟ ଓ ବିରକ୍ତ ହେଲେ ।

ଅନନ୍ତର ଡ଼ଉନ ଆଦି ନର୍ଲ୍‌ଭ ପ୍ରଭୃତି ଜମିଦାରଗଣ ଉପସ୍ଥିତ ବିଷୟରେ ବିଶିଷ୍ଟ ରୂପ ଉଦ୍ୟୁକ୍ତ ହୋଇ ବିବେଚନା କରି ସ୍ଥିର କଲେ ଯେ ପଣ୍ଡିଷୋଲୀର୍ଣ୍ଣ କେନ୍‌କନସଙ୍କୁ ନିଯୁକ୍ତ କରାଯିବ ଏବଂ ଏପର୍ଯ୍ୟନ୍ତେ ଯାଜକମଣ୍ଡଳୀର ନିଯୁକ୍ତ ଶିକ୍ଷକ ଯେତେ ବେତନ ପାଇଅଛନ୍ତି ଏହାଙ୍କୁ ତାହା ଦିଆଯିବ । ଅନନ୍ତର ଏକ କର୍ମି କର ପୁରୁଣା ବିପଣିରେ ସ୍ଥାନ ନିରୂପଣ କରି କେନ୍‌କନସଙ୍କୁ ଶିକ୍ଷକପଦରେ ଅଭିଷିକ୍ତ କଲେ । ତାହା ଦେଖି ସକଳ ବାଳକ ଓ ତାହାଙ୍କର ପିତା ମାତାମାନେ ପରମ ପରିତୋଷ ପ୍ରାପ୍ତ ହେଲେ । ଅତି ଅଳ୍ପ ଦିନ ମଧ୍ୟରେ ବାଳକମାନେ ପୂର୍ବ ପାଠଶାଳା ପରିତ୍ୟାଗ କରି କେନ୍‌କନ୍‌ସ ନିକଟକୁ ଆସିବାକୁ ଲାଗିଲେ । କେନ୍‌କନ୍‌ସ କିଛି ଦିନ ପୂର୍ବରେ ଶିକ୍ଷା କରୁଥିଲେ । କିନ୍ତୁ ଅଳ୍ପ ଦିନ ମଧ୍ୟରେ ଶିକ୍ଷା ଦେବାକୁ ଲାଗିଲେ । ସେ ଏପରି ବେତନ ପାଇବାକୁ ଲାଗିଲେ ଯେ ସେଥିରେ ଆବଶ୍ୟକୀୟ ବ୍ୟୟ ନିର୍ବାହ ହୋଇ ଅତି ଅଳ୍ପମାତ୍ର ଅବଶିଷ୍ଟ ରୁହଇ ।

ସେ ଅତି ଶୀଘ୍ର ଜଣେ ଉତ୍କୃଷ୍ଟ ଶିକ୍ଷକ ହୋଇ ଉଠିଲେ । ତାହା ଦେଖି ତାହାଙ୍କର ବନ୍ଧୁଗଣ ଆନନ୍ଦପ୍ରବାହରେ ମଗ୍ନ ହେଲେ; ଆଉ ତାହାଙ୍କର ପ୍ରତିପକ୍ଷ ଯାଜକମଣ୍ଡଳୀର ମୁଖ ମଳିନ ହେଲା । ସେ ଶିକ୍ଷା ଦେବାର ଅତ୍ୟୁତ୍କୃଷ୍ଟ ଓ ଫଳୋପଧାୟକ ପ୍ରଣାଳୀ ଜାଣନ୍ତି । କୌଣସି ପ୍ରକାର କାର୍କଶ୍ୟ ପ୍ରକାଶ ନ କରି କେବଳ କୌଶଳବଳରେ କାର୍ଯ୍ୟ ନିର୍ବାହ କରିବାରୁ ସ୍ୱୀୟ ଛାତ୍ରମାନଙ୍କର ସାତିଶୟ ପ୍ରିୟ ଓ ନିୟୋଗୀଗଣର ଅତି ଆଦରଣୀୟ ହୋଇ ଥିଲେ । ସପ୍ତାହରେ ଛ ଦିନ ବିଦ୍ୟାଳୟର କାର୍ଯ୍ୟ କରନ୍ତି ଏବଂ ଏହି କେତେ ଦିନ ସ୍ୱୟଂ ଯାହା ଶିକ୍ଷା କରନ୍ତି ପ୍ରତି ଶନିବାର ଅପରାହ୍ଣରେ ହାର୍ଡ୍‌ଫିଲ୍ଡକୁ ଗମନ କରି ତତ୍ରତ୍ୟ ବିଦ୍ୟାଳୟର ଅଧ୍ୟାପକ ନିକଟରେ ପରିଚୟ ଦେଇ ଆସନ୍ତି । ଏଥିରେ ଦେଖା ଯାଉଅଛି ଯେ, ସେ ଶିକ୍ଷକ ହୋଇ ଶୁଦ୍ଧା ଶିକ୍ଷା କରିବାରୁ ବିରତ ଥିଲେ ନାହିଁ ।

ଏହି ରୂପେ ପ୍ରାୟ ଦୁଇ ବରଷ ବିଦ୍ୟାଳୟର କାର୍ଯ୍ୟ ସମ୍ପାଦନ କଲେ, ତାହାଙ୍କର ଦୁଇ ଶତ ଟଙ୍କା ସଞ୍ଚୟ ହେଲା । ତେତେବେଳେ ସେ ଜଣେ ପ୍ରତିନିଧି ଦେଇ ଶୀତ କେତେ ମାସ କୌଣସି ପ୍ରଧାନ ବିଦ୍ୟାଳୟରେ ରହି ଲାଟିନ୍, ଗ୍ରୀକ୍ ଓ ଗଣିତ ଶାସ୍ତ୍ର ବିଶେଷ ରୂପେ ଅଧ୍ୟୟନ କରିବା ନିମନ୍ତେ ଅଭିଳାଷୀ ହେଲେ । ସେ ପାଠଶାଳାର ଅଧ୍ୟକ୍ଷଗଣର ଅତ୍ୟନ୍ତ ଆଦରଣୀୟ ଥିଲେ; ଅତଏବ ସେମାନେ ଅତି ସନ୍ତୁଷ୍ଟ ହୋଇ ତାହାଙ୍କୁ ବିଦାୟ ଦେଲେ । ତେତେବେଳେ ସେ ଉପସ୍ଥିତ

ବ୍ୟାପାର ସତ୍‌ପରାମର୍ଶ ନେବା ନିମନ୍ତେ ତାହାଙ୍କର ଦୟାଳୁ ବନ୍ଧୁ ମନର୍ଜିଫ ମହାଶୟଙ୍କ ନିକଟରେ ଉପସ୍ଥିତ ହେଲେ । ଏହି ଦୟାବାନ୍ ଲୋକ ତାହାଙ୍କର ଗ୍ରୀକ୍ ଅଭିଧାନ ରଚନା ସମୟରେ ସାହାଯ୍ୟ କରିଥିଲେ । ତାହାବାଦ ଆହୁରି ଅନେକ ଥର ଅନେକ ଉପକାର କରିଥିଲେ । ମନର୍ଜିଫ ପରିଚୟ ଦିବସଠାରୁ ଜେନକିନ୍‌ସଙ୍କୁ ଅଦ୍ଭୁତ ପଦାର୍ଥ ମଧ୍ୟରେ ଗଣନା କରିଥିଲେ । ଏତେବେଳେ ତାହାଙ୍କର ଏହି ଅଭିନବ ପ୍ରସ୍ତାବ ଶୁଣି ଆହୁରି ଚମତ୍କୃତ ହେଲେ ଏବଂ ସର୍ବାଗ୍ରରେ ତାହାଙ୍କର ସମ୍ମାନ ବିଷୟ ପଚାରି ସବିଶେଷ ଅବଗତ ହୋଇ କହିଲେ ଶୁଣ ମିତ୍ର ! ଏଥିରେ କୌଣସି ପ୍ରକାରେ ତୁମ୍ଭର ଅଭିପ୍ରାୟ ସିଦ୍ଧ ହୋଇ ପାରିବ ନାହିଁ । ଯାହା ସଞ୍ଚୟ କରିଅଛ ତଦ୍ଦ୍ୱାରା ଶୁଲ୍‌କଦାନ ନିର୍ବାହ ହେବା କଠିନ । ଏହା ଶୁଣି ଜେନ୍‌କିନ୍‌ସ ଅତ୍ୟନ୍ତ ଦୁଃଖିତ ହେଲେ । କିନ୍ତୁ ତାହାଙ୍କର ସେହି ବଦାନ୍ୟ ବନ୍ଧୁ ତାହାଙ୍କର ସେହି କ୍ଷୋଭ ଶାନ୍ତ କରିବା ନିମନ୍ତେ, ତାହାଙ୍କର ହସ୍ତରେ ଖଣ୍ଡେ ଅନୁମତିପତ୍ର ପ୍ରଦାନ କରି କହିଲେ, ଏଡ଼ିନବର୍ଗର ଅମୁକ ବଣିକ୍‌ଙ୍କୁ ଲେଖିଲୁଁ, ଆଉ ଅଧିକ ଅର୍ଥ ପ୍ରୟୋଜନ ହେଲେ ତାହାଙ୍କଠାରୁ ମାଗି ନେବ ।

ତେତେବେଳେ ଜେନ୍‌କିନ୍‌ସ ଅସୀମ ହର୍ଷ ପ୍ରାପ୍ତ ହୋଇ ଏଡ଼ିନବର୍ଗକୁ ଗମନ କଲେ । ସେଠାରେ ଉପସ୍ଥିତ ହୋଇ ପ୍ରଥମରେ ଲାଟିନ ଅଧ୍ୟାପକ ନିକଟକୁ ଯାଇ ତାହାଙ୍କ ଶ୍ରେଣୀରେ ପ୍ରବିଷ୍ଟ ହେବାପାଇଁ ପ୍ରବେଶିକା ପ୍ରାର୍ଥନା କରିବାରୁ ସେ ତାହାଙ୍କୁ ଦେଖି କେତେ କ୍ଷଣ ପର୍ଯ୍ୟନ୍ତ ଅବାକ୍ ହୋଇ ରହିଲେ; ଅନନ୍ତର ପଚାରିଲେ "ତୁମ୍ଭେ କିଛି ଲାଟିନ ଶିକ୍ଷିଅଛ କି ନା ?" ଜେନ୍‌କିନ୍‌ସ ବିନୀତ ଭାବରେ ଉତ୍ତର କଲେ, "ଆମ୍ଭେ ବହୁକାଳ ଲାଟିନ ଅଧ୍ୟୟନ କରିଅଛୁଁ । ଏତେବେଳେ ଉକ୍ତ ଭାଷାରେ ସମ୍ପୂର୍ଣ୍ଣ ଜ୍ଞାନ ଲାଭ ନିମନ୍ତେ ଏସ୍ଥାନକୁ ଆସିଅଛୁଁ ।" ଉକ୍ତ ଅଧ୍ୟାପକ, ସେ ଯାହା କହିଲେ ତାହା ଯଥାର୍ଥ ନିଶ୍ଚୟ କରି, ତତ୍‌କ୍ଷଣାତ୍ ତାହାଙ୍କୁ ଏକ ପ୍ରବେଶିକା ପ୍ରଦାନ କଲେ । ଗାଢ଼ ବଦାନ୍ୟତା ପ୍ରଦର୍ଶନ ପୂର୍ବକ ନିୟମିତ ଶୁଲ୍‌କ ଗ୍ରହଣ କଲେ ନାହିଁ ।

ଅନନ୍ତର ଜେନ୍‌କିନ୍‌ସ ଅନ୍ୟ ଦୁଇ ଅଧ୍ୟାପକ ନିକଟରେ ପ୍ରାର୍ଥନା କରିବାରୁଁ, ସେମାନେ ଶୁଦ୍ଧା ପ୍ରଥମରେ ଚମତ୍କୃତ ହେଲେ, ପରିଶେଷରେ ତାହାଙ୍କୁ ଶିଷ୍ୟମଣ୍ଡଳୀ ମଧ୍ୟରେ ନିବେଶିତ କଲେ । ସେମାନଙ୍କ ମଧ୍ୟରୁ କେବଳ ଜଣେ ଶୁଲ୍‌କ ଗ୍ରହଣ କଲେ । ସେ ଏହି ରୂପେ ତିନି ଶ୍ରେଣୀରେ ପ୍ରବିଷ୍ଟ ହୋଇ ଶୀତ କେତେ ମାସ ସେଠାରେ ରହି ଅଭିଲାଷାନୁରୂପ ଅଧ୍ୟୟନ ସମାଧାନ କଲେ, ଅଥଚ ପରମ ଦୟାଳୁ ମନର୍ଜିଫ ମହାଶୟଙ୍କ ପତ୍ର ଉପରେ ଅଧିକ ନିର୍ଭର କରିବାକୁ ହେଲା ନାହିଁ । ବସନ୍ତ କାଳ ଉପସ୍ଥିତ ହେଲେ ଟିବିୟଟ୍‌ହେଡ଼କୁ ପ୍ରତ୍ୟାଗମନ କରି ସେ

ଯଥାନିୟମରେ ବିଦ୍ୟାଳୟର କାର୍ଯ୍ୟ କରିବାକୁ ଆରମ୍ଭ କଲେ । ଏହି ଅଦ୍ଭୁତ ଆଖ୍ୟାନର ଉପସଂହାର ଯେପରି ହେଲେ ସମସ୍ତଙ୍କର ମନୋରଞ୍ଜନ ହୁଅନ୍ତା ତାହା ସେପରି ହୋଇ ନାହିଁ । ଆମ୍ଭମାନଙ୍କର ବିବେଚନାରେ ଏହାଙ୍କୁ କୌଣସି ଦେଶହିତୈଷୀ ସମାଜର ସାହାଯ୍ୟରେ ତାହାଙ୍କର ସ୍ୱଦେଶକୁ ପଠାଇବାର ଉଚିତ ଥିଲା । ତାହା ହେଲେ ସେ ପୈତୃକ ପ୍ରଜାଗଣର ସଭ୍ୟତା ସମ୍ପାଦନ ଓ ଶିକ୍ଷାଦାନ କରି ପାରନ୍ତେ । ପ୍ରାୟ ଚାଳିଶ ବରଷ ଗତ ହେଲା କୌଣସି ସଦାଶୟ ପ୍ରତିବାସୀ ଲୋକ, ସଦଭିପ୍ରାୟରେ, ଔପନିବେଶିକ ଦାସମଣ୍ଡଳୀର ଉପଯୁକ୍ତ ଧର୍ମୋପଦେଷ୍ଟା ବୋଲି, ଜେନ୍‌କିନ୍‌ସନ୍‌ଙ୍କୁ ଖ୍ରୀଷ୍ଟ ଧର୍ମ ସଞ୍ଚାରଣୀ ସଭାରେ ପରିଚୟ କରି ଦେଲେ । ଉକ୍ତ ସଭାର ଅଧ୍ୟକ୍ଷମାନେ, ତାହାଙ୍କୁ ସମ୍ମତ କରାଇ, ଉପଦେଶକତାର ଭାର ଦେଇ, ମରିଶସ୍ ଉପଦ୍ୱୀପକୁ ପ୍ରେରଣ କଲେ, କିନ୍ତୁ ଏହି ନିୟୋଗ ତାହାଙ୍କ ପକ୍ଷରେ କୌଣସି ପ୍ରକାରେ ଉପଯୁକ୍ତ ହୋଇ ନାହିଁ ।



# ସର ଉଇଲିୟମ ଜୋନ୍ସ

ଜୋନ୍ସ ୧୭୪୬ ସାଲ ସେପ୍ଟେମ୍ବର ମାସ ୨୦ ତାରିଖରେ ଲଣ୍ଡନ ନଗରରେ ଜନ୍ମଗ୍ରହଣ କଲେ । ତୃତୀୟ ବରଷ ବୟଃକ୍ରମ କାଳରେ ତାହାଙ୍କର ଜନକ ପରଲୋକ ଯାତ୍ରା କଲେ; ସୁତରାଂ ତାହାଙ୍କର ଲେଖା ପଢ଼ା ଭାର ସ୍ୱର ଜନନୀ ଉପରେ ରହିଲା । ଏହି ନାରୀ ଅସାମାନ୍ୟ ଗୁଣସମ୍ପନ୍ନା ଥିଲେ । ଜୋନ୍ସ ଅତି ଶୈଶବ କାଳରେ ଅଦ୍ଭୁତ ପରିଶ୍ରମ ଓ ଗାଢ଼ତର ବିଦ୍ୟାନୁରାଗର ଦୃଢ଼ତର ପ୍ରମାଣ ଦେଖାଇ ଥିଲେ । ଏକଥା ବିଦିତ ଅଛି, ତିନ ଚାରି ବରଷ ବୟଃକ୍ରମ ସମୟରେ ସେ ଯଦି କୌଣସି ବିଷୟ ଜାଣିବା ଅଭିଳାଷରେ ମାତାଙ୍କୁ କିଛି ପଚାରନ୍ତି ତେବେ ସେହି ବୁଦ୍ଧିମତୀ ନାରୀ କହନ୍ତି ଯେ "ପଢ଼ିଲେ ଜାଣି ପାରିବ ।" ଏହି ରୂପେ ପୁସ୍ତକ ପାଠ ବିଷୟରେ ତାହାଙ୍କର ଗାଢ଼ ଅନୁରାଗ ଜନ୍ମିଲା; ଏବଂ ତାହା ବୟୋବୃଦ୍ଧି ସହିତ ବୃଦ୍ଧି ପ୍ରାପ୍ତ ହେଲା ।

ସପ୍ତମ ବରଷ ବୟସ ସମୟରେ ସେହାରୋ ନଗର ପାଠଶାଳାକୁ ପ୍ରେରିତ ହେଲେ । ଏବଂ ୧୭୬୪ ସାଲରେ, ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟସ୍ଥିତ ଥାଉ ୨ ବ୍ରତବର୍ଗ ପରି ବୃଥା ସମୟ ନଷ୍ଟ ନ କରି ଅଧ୍ୟୟନ ବିଷୟରେ ମନୋନିବେଶ କରନ୍ତି ଏବଂ ଅତିଶୟ ଆଗ୍ରହ ପୂର୍ବକ ଅତ୍ୟନ୍ତ ପରିଶ୍ରମଦ୍ୱାରା ବିଦ୍ୟାଳୟର ନିର୍ଦ୍ଧିଷ୍ଟ ପୁସ୍ତକ ବ୍ୟତିରେକେ ଅନ୍ୟାନ୍ୟ ପୁସ୍ତକ ପାଠ କରନ୍ତି; ବାସ୍ତବ ସେ ପାଠଶାଳାରେ ଏରୂପ ପରିଶ୍ରମୀ ଓ ବିଦ୍ୟାନୁରାଗୀ ଥିଲେ ଯେ ତାହା ଦେଖି ତାହାଙ୍କର ଅଧ୍ୟାପକ କହିଥିଲେ "ଏହି ପିଲ ସାଲିସବରି ପ୍ରାନ୍ତରେ ନଗ୍ନ ଓ ନିଃସହାୟ ହୋଇ ପରିତ୍ୟକ୍ତ ହେଲେ ମଧ୍ୟ ଖ୍ୟାତି ଓ ସମ୍ପତ୍ତିର ମାର୍ଗ ପ୍ରାପ୍ତ ହେବ, ସନ୍ଦେହ ନାହିଁ ।"

ଏହି ସମୟରେ ସେ ପ୍ରାୟ ସବୁ ବେଳେ ନିଦ୍ରା ପ୍ରତିରୋଧ ନିମନ୍ତେ କାଫି ଓ ଚା ଖାଇ ସମସ୍ତ ରାତି ଅଧ୍ୟୟନ କରନ୍ତି । ମାତ୍ର ଏରୂପ ଅନୁଷ୍ଠାନ ପ୍ରଶଂସନୀୟ ନୁହଇ; କାରଣ ଏପରି ଆଚରଣରେ ରୋଗ ଜନ୍ମି ପାରେ ।

ଜୋନ୍ସ ଅବସର ପାଇଲେ ବ୍ୟବହାର ଶାସ୍ତ୍ର ଅଧ୍ୟୟନ କରନ୍ତି । ଏହା ନିର୍ଦ୍ଦିଷ୍ଟ ଅଛି ଯେ ସେ କୋକ ଲିଖିତ ବ୍ୟବହାର ଶାସ୍ତ୍ରର ସାରସଂଗ୍ରହ କରି ସେଥିରେ ଏମନ୍ତ ବ୍ୟୁତ୍ପନ୍ନ ହୋଇଥିଲେ ଯେ ସ୍ୱୀୟ ଜନନୀର ପରିଚିତ ଗୃହାଗତ ବ୍ୟବହାରଦର୍ଶୀମାନଙ୍କୁ ଉକ୍ତ ଗ୍ରନ୍ଥରୁ ସମୁଦ୍ଧୃତ ବ୍ୟବହାର ବିଷୟ ପ୍ରଶ୍ନଦ୍ୱାରା ସେମାନଙ୍କୁ ପ୍ରୀତ ଓ ଚମତ୍କୃତ କରନ୍ତି ।

ଦେଖାଯାଉଅଛି ଜୋନ୍ସ ଭାଷା ଶିକ୍ଷା ବିଷୟରେ ସ୍ୱଭାବତଃ ଅତିନିପୁଣ ଓ ଅନୁରାଗୀ ଥିଲେ । ସଚରାଚର ଦେଖାଯାଏ ଯେଉଁ ସକଳ ଲୋକର ଭାଷାଶିକ୍ଷାରେ ଅନୁରାଗ ଓ ନିପୁଣତା ଥାଏ ସେମାନଙ୍କର ପ୍ରାୟ ଅନ୍ୟକୌଣସି ବିଷୟରେ ବୁଦ୍ଧି ପ୍ରବେଶ ହୁଏ ନାହିଁ । ମାତ୍ର ଜୋନ୍ସ ବିଷୟରେ ସେପରି ଦେଖାଯାଉ ନାହିଁ । ସେ ଅତ୍ୟନ୍ତ ପ୍ରୟୋଜନୋପଯୋଗୀ ବହୁତର ଜ୍ଞାନ ଶାସ୍ତ୍ରରେ ଓ ସୁକୁମାର ବିଦ୍ୟାରେ ଶୁଦ୍ଧା ବିଶିଷ୍ଟରୂପ ପାରଦର୍ଶୀ ଥିଲେ । ଅକ୍ସଫୋର୍ଡ ଅଧ୍ୟୟନ ସମୟରେ ସେ ଆସିଆ ଖଣ୍ଡର ଭାଷା ସକଳ ଶିକ୍ଷା ବିଷୟରେ ଅତ୍ୟନ୍ତ ଅଭିଳାଷୀ ହୋଇଥିଲେ ଏବଂ ଆରବୀ ଶିଖାଇବା ନିମନ୍ତେ ସ୍ୱୟଂ ବେତନ ଦେଇ, ଏଲପୋ ଦେଶୀୟ ଏକ ଲୋକକୁ ନିଯୁକ୍ତ କଲେ । ଗ୍ରୀକ ଲାଟିନ ଭାଷାରେ ତାହା ପୂର୍ବରୁ ତାହାଙ୍କର ଉତ୍ତମ ଜ୍ଞାନ ଥିଲା । ବିଦ୍ୟାଳୟର ଅନଧ୍ୟାୟ ସମୟରେ ଉପସ୍ଥିତ ହେଲେ ସେ ଅଶ୍ୱାରୋହଣ ଓ ସ୍ୱାସ୍ଥ୍ୟ ରକ୍ଷା ଶିକ୍ଷା କରନ୍ତି; ଏବଂ ଇଟାଲୀୟ, ସ୍ପାନିଶ, ପର୍ତ୍ତୁଗିଜ ଓ ଫ୍ରେଞ୍ଚ ଭାଷାର ଅତ୍ୟୁତ୍ତମ ଗ୍ରନ୍ଥ ସକଳ ପାଠ କରନ୍ତି; ଏବଂ ଏହା ମଧ୍ୟରେ ଶୁଦ୍ଧା ଅବକାଶ ପାଇଲେ, ନୃତ୍ୟ, ବାଦ୍ୟ, ଖଡ୍ଗପ୍ରୟୋଗ ଓ ବୀଣା ବାଦନ ଶିଖନ୍ତି ।

ଛାତ୍ରବୃତ୍ତି ପ୍ରାପ୍ତ ହେଲେ ଜନନୀଙ୍କୁ ବିଦ୍ୟାଳୟର ବେତନ ଦାନରୂପ ଭାରରୁ ମୁକ୍ତ କରିପାରିବେ, ଏହି ଆଶୟରେ ସେ ପୂର୍ବ ନିର୍ଦ୍ଦିଷ୍ଟ ବହୁବିଧ ଅଧ୍ୟୟନରେ ବ୍ୟାପୃତ ରହି ଶୁଦ୍ଧା, ଉକ୍ତ ଅଭିଳଷିତ ବୃତ୍ତି ପ୍ରାପ୍ତି ବିଷୟରେ କୌଣସି ରୂପେ ଅମନୋଯୋଗୀ ଥିଲେ ନାହିଁ ।

କିନ୍ତୁ ଏହି ଅଭିଳଷିତ ବିଷୟରେ କୃତକାର୍ଯ୍ୟ ହୋଇ ନ ପାରି, ୧୭୬୫ ସାଲରେ ଲର୍ଡ ଆଲଥର୍ପର ଶିକ୍ଷକତା କାର୍ଯ୍ୟ ସ୍ୱୀକାର କଲେ, ଏବଂ କିଛି ଦିନ ଉତ୍ତାରେ ଅଭିପ୍ରେତ ଛାତ୍ରବୃତ୍ତି ମଧ୍ୟ ପ୍ରାପ୍ତ ହେଲେ । ୧୭୬୭ ସାଲରେ, ତାହାଙ୍କୁ ସତ୍ୱର ଜର୍ମଣିର ଅନ୍ତର୍ବର୍ତ୍ତୀ ସ୍ପା ନାମକ ନଗରରେ ଅବସ୍ଥିତି କରିବାକୁ ହୋଇଥିଲା; ଏହି ସୁଯୋଗରେ ସେ ଜର୍ମଣି ଭାଷା ଶିକ୍ଷା କଲେ । ସେଠାରୁ ପ୍ରତ୍ୟାଗମନ କରି ନାଦର ଶାହାର ଜୀବନ ବୃତ୍ତାନ୍ତ ଫ୍ରେଞ୍ଚ ଭାଷାରେ ଅନୁବାଦ କଲେ । ଏହା ପାରସ୍ୟ ଭାଷାରେ ଲେଖିତ ଥିଲା ।

କଛୁ ଦନ ଉତ୍ତାରେ ତାହାଙ୍କ ଆପଣା ଗ୍ରନ୍ଥ ଓ ତଦାସ୍ତ ମଳବାର ସହତ, ମହାଦ୍ୱୀପକୁ ଗମନ କର ୧୭୭୦ ସାଲ ପର୍ଯ୍ୟନ୍ତେ ଅବସ୍ଥିତ କରବାକୁ ହେଲା । ଉକ୍ତ ସାଲରେ ତାହାଙ୍କ ଶିକ୍ଷକତା କାର୍ଯ୍ୟ ରହତ ହେବାରୁ ବ୍ୟବହାର ଶାସ୍ତ୍ର ଅଧ୍ୟୟନ ନମନ୍ତେ ଟେମ୍ପଲ ନାମକ ବଦ୍ୟାଳୟରେ ନଯୁକ୍ତ ହେଲେ । ମାତ୍ର ଏହି ରୂପ ବଷୟ କର୍ମ ଅନୁସରଣରେ ପ୍ରବୃତ୍ତ ହୋଇ ମୁଦ୍ଧା ସେ ବଦ୍ୟାନୁଶୀଳନ ଏକାବେଳକେ ପରତ୍ୟାଗ କଲେ ନାହିଁ; କୌଣସି ୨ ସମୟରେ ନାନା ବଦ୍ୟାର ନାନା ଗ୍ରନ୍ଥ ରଚନା କରନ୍ତ; ସେ ସକଳ ଅଦ୍ୟାପି ବଦ୍ୟମାନ ଅଛୁ । ସେଥିରେ ତାହାଙ୍କର ବଦ୍ୟା, ବୃଦ୍ଧି ଓ ମନର ଉତ୍କର୍ଷ ପ୍ରଦର୍ଶିତ ହୋଇଅଛୁ ।

୧୭୭୪ ସାଲରେ ଜୋନସ୍ ବଗ୍ରବାଳୟର ବ୍ୟବହାରାଜୀବ କର୍ମରେ ନଯୁକ୍ତ ହେଲେ, ଏବଂ ଅନ୍ୟ ଅବଲମ୍ବିତ ବ୍ୟବସାୟ ବଷୟରେ ଅତ ଶୀଘ୍ର ଖ୍ୟାତ ଓ ପ୍ରତପତ୍ତି ଲଭ କରବାକୁ ଲଗିଲେ ।

କଲକତାର ସୁପ୍ରିମ କୋର୍ଟର ପ୍ରଧାନ ବଗ୍ରରପତର ପଦ ବହୁ କାଳରୁ ତାହାଙ୍କର ପ୍ରାର୍ଥନୀୟ ଥିଲା । ପରେ ୧୭୮୩ ସାଲ ମାର୍ଚ୍ଚ ମାସରେ ଉକ୍ତ ବରପ୍ରାର୍ଥିତ ପଦରେ ନଯୁକ୍ତ ହେଲେ, ସେ ସେହି ସମୟରେ ନାଇଟ ଉପାଧି ମଧ୍ୟ ପ୍ରାପ୍ତ ହେଲେ । ସୁପ୍ରିମ କୋର୍ଟର ବହୁ ପରଶ୍ରମ ସାଧ କର୍ମରେ ଅତ୍ୟନ୍ତ ବ୍ୟାପୃତ ରହି ମୁଦ୍ଧା, ସେ ପୂର୍ବଠାରୁ ଅଧିକତର ପ୍ରଯତ୍ନ ଓ ପରଶ୍ରମ ସହତ ସାହତ୍ୟ ବଦ୍ୟା ଓ ଦର୍ଶନ ଶାସ୍ତ୍ର ଅନୁଶୀଳନ କରବାକୁ ଲଗିଲେ । କଲକତାରେ ଉପସ୍ଥିତ ହୋଇ ଲଣ୍ଡନ ନଗର ରୟେଲ ସୋସାଇଟୀ ନାମକ ସଭାକୁ ଆଦର୍ଶ କର ସ୍ୱୀୟ ଅସାଧାରଣ ଉତ୍ସାହ ଓ ଉଦ୍ୟୋଗଦ୍ୱାରା ଏସିଆଟିକ ସୋସାଇଟୀ ନାମକ ସଭା ସ୍ଥାପନ କଲେ । ସେ ଯେତେ କାଳ ଜୀବତ ଥିଲେ ତେତେ ଦନ ପର୍ଯ୍ୟନ୍ତେ ତାହାର ସଭାପତର କାର୍ଯ୍ୟ ନର୍ବାହ କରଥିଲେ । ଏବଂ ପ୍ରତ ବରଷ ବହୁତର ପରଶ୍ରମ ସ୍ୱୀକାର ପୂର୍ବକ ଏତଦ୍ଦେଶୀୟ ଶବ୍ଦ ବଦ୍ୟା ଓ ପୂର୍ବକାଳୀୟ ବଷୟ ସକଳର ତତ୍ତ୍ୱାନୁସନ୍ଧାନଦ୍ୱାରା ଉକ୍ତ ସଭାର କାର୍ଯ୍ୟ ଉଜ୍ଜ୍ୱଳ ଓ ବଭୂଷିତ କରଥିଲେ ।

ବଗ୍ରାଳୟ ବନ୍ଦ ଭନ୍ନ ଆଉ ତାହାଙ୍କର ଅଧ୍ୟୟନର ଅବକାଶ ଥିଲା ନାହିଁ । ୧୭୮୫ ସାଲରେ ଦୀର୍ଘ କାଳ ନମନ୍ତେ ବଗ୍ରାଳୟ ବନ୍ଦ ହେଲେ ସେ ଯେପର ଦବସ ଅତବାହତ କରଥିଲେ ତାହାଙ୍କ ଲେଖିତ କାଗଜ ପତ୍ର ମଧ୍ୟରେ ତାହାର ବଶେଷ ବୃତ୍ତାନ୍ତ ଦେଖାଯାଏ । ପ୍ରାତଃକାଳରେ ଘଣ୍ଟେ ଉଠି ଲେଖି କେତେକ ଅଧ୍ୟାୟ ବାଇବଲ ଅଧ୍ୟୟନ କରନ୍ତ; ତତ୍ପରେ ସଂସ୍କୃତ ବ୍ୟାକରଣ ଓ ଧର୍ମଶାସ୍ତ୍ର;

ମଧ୍ୟାହ୍ନ ସମୟରେ ଭାରତବର୍ଷର ଭୂଗୋଳ ବିବରଣ; ଅପରାହ୍ନ ସମୟରେ ରୋମରାଜ୍ୟର ପୁରାବୃତ୍ତ, ପରିଶେଷରେ ଦୁଇ ଘଣ୍ଟାର ବାଜି ଶତରଞ୍ଜ ଖେଳ ଓ ଆରିଷ୍ଟଟଲର କିୟଦଂଶ ପାଠକରି ଦିନପାତ କରନ୍ତି ।

ସେ ଏତଦ୍ଦେଶୀୟ ଜଳବାୟୁ ଦୋଷରେ ଶାରୀରିକ ଅସୁସ୍ଥ ହେବାକୁ ଲାଗିଲେ । ବିଶେଷରେ ତାହାଙ୍କର ଚକ୍ଷୁ ଏମନ୍ତ ନିସ୍ତେଜ ହୋଇ ଗଲା ଯେ ମଧୁଥବର୍ତ୍ତିକାର ଆଲୋକରେ ଲେଖା ରହିତ କରିବାକୁ ହୋଇଥିଲା । ମାତ୍ର ଯେତେ ଦିନ ପର୍ଯ୍ୟନ୍ତେ ତାହାଙ୍କର କିଞ୍ଚିନ୍ମାତ୍ର ସାମର୍ଥ୍ୟ ଥିଲା ତାହିଁରେ ତାହାଙ୍କର ଅଭିଳଷିତ ଅଧ୍ୟୟନର ବ୍ୟାଘାତ ଘଟିଲା ନାହିଁ । ପୀଡ଼ାଭିଭୂତ ହୋଇ ଶଯ୍ୟାଗତ ରହି ଶୁଦ୍ଧା ବନା-ସାହାଯ୍ୟରେ ଉଦ୍ଭିଦ୍ବିଦ୍ୟା ଅଧ୍ୟୟନ କରନ୍ତି । ଏବଂ ବୈଦ୍ୟର ଉପଦେଶାନୁସାରେ ସ୍ୱାସ୍ଥ୍ୟ ପ୍ରତିଲାଭ ନିମନ୍ତେ ସେ କିଞ୍ଚିତ୍ କ୍ଷଣ ପର୍ଯ୍ୟଟନ କରନ୍ତି ତହିଁରେ ଗ୍ରୀସ, ଇଟାଲି ଓ ଭାରତବର୍ଷୀୟ ଦେବତାଗଣର ବିଷୟରେ ଏକ ପ୍ରଶସ୍ତ ଗ୍ରନ୍ଥ ରଚନା କରନ୍ତି । ଏଥିରୁ ବୋଧ ହେଉଅଛି ଯେ ସେ ଆପଣା ମନକୁ ଏମନ୍ତ ଦୃଢୀଭୂତ କରିଥିଲେ ଯେ ଏପରି ପରିଶ୍ରମ ବିଶ୍ରାମ ମଧ୍ୟରେ ଗଣନୀୟ ହୁଅଇ ।

କିଛି ଦିନ ଉତ୍ତାରେ ସେ କିଞ୍ଚିତ୍ ସୁସ୍ଥ ହୋଇ ଉଠିଲେ । ଏବଂ ପୁନର୍ବାର ପୂର୍ବଠାରୁ ସମଧିକ ପ୍ରଯତ୍ନ ଓ ଉତ୍ସାହ ସହିତ ବିଚାରାଳୟ କାର୍ଯ୍ୟରେ ଓ ଅଧ୍ୟୟନରେ ମନୋନିବେଶ କଲେ । ସେ କିଛି ଦିନ କଲିକତାର ଅଢ଼ାଇ କୋଶ ଦୂରରେ ଭାଗିରଥୀତଟସ୍ଥ ଏକ ଭବନରେ ଅବସ୍ଥିତ କରିଥିଲେ । ସେହି ସମୟରେ ତାହାଙ୍କୁ କର୍ମ ଅନୁରୋଧରେ ପ୍ରତ୍ୟହ ବିଚାରାଳୟକୁ ଆସିବାକୁ ହୁଅଇ । ତାହାଙ୍କର ଜୀବନ ବୃତ୍ତାନ୍ତ ଲେଖକ ସୁଶୀଳ ପ୍ରଜ୍ଞାବାନ୍ ଲର୍ଡ଼ଟିନ-ମୌଥ କହନ୍ତି ଯେ, "ସେ ପ୍ରତିଦିବସ ସୂର୍ଯ୍ୟାସ୍ତର ପର ସେହି ସ୍ଥାନକୁ ପ୍ରତ୍ୟାଗମନ କରନ୍ତି । ଏବଂ ଏମନ୍ତ ପ୍ରତ୍ୟୁଷରେ ଉଠନ୍ତି ଯେ, ପଦବ୍ରଜରେ ଆସି ଅରୁଣୋଦୟ ସମୟରେ କଲିକତା ଆବାସରେ ଉପସ୍ଥିତ ହୁଅନ୍ତି । ସେ ସ୍ଥାନରେ ଉପସ୍ଥିତ ହୋଇ ବିଚାରାଳୟର କାର୍ଯ୍ୟ ଆରମ୍ଭ ହୋଇବା ପୂର୍ବରେ ଯେଉଁ ଅବକାଶ ଥାଏ ତାହା ପୃଥକ୍ ଅଧ୍ୟୟନ ବିଷୟରେ ନିୟୋଜିତ ଥିଲା । ଏହି ସମୟରେ ସେ ରଜନୀ ତିନି ଚାରି ଘଣ୍ଟା ବେଳେ ଶଯ୍ୟା ପରିତ୍ୟାଗ କରନ୍ତି ।"

ବିଚାରାଳୟର କାର୍ଯ୍ୟ ବନ୍ଦ ହେଲେ ଶୁଦ୍ଧା ସେ କେବଳ କର୍ମରେ ବ୍ୟାପୃତ୍ତ ଥାଆନ୍ତି । ୧୭୮୭ ସାଲ କର୍ମ ବନ୍ଦ ସମୟରେ ସେ କୃଷ୍ଣ ନଗରରେ ଅବସ୍ଥିତ କରିଥିଲେ । ସେ ସ୍ଥାନରୁ ଲେଖିଅଛନ୍ତି "ଆମ୍ଭେ ଏହି ଗ୍ରାମ୍ୟ କୁଟୀରରେ ବାସ କରି

ଅତ୍ୟନ୍ତ ସନ୍ତୁଷ୍ଟତା ଲାଭ କରଅଛନ୍ତି ଏହି ତିନମାସ କର୍ମ ବନ୍ଦ ଉପଲକ୍ଷ୍ୟରେ ଅବକାଶ ପାଇଅଛନ୍ତି ସତ୍ୟ, ମାତ୍ର ଅମ୍ଭେ ଏକ ନିମେଷ ନିମନ୍ତେ ଶୁଦ୍ଧା କର୍ମଶୂନ୍ୟ ନୁହଁ । ଇଚ୍ଛାନୁରୂପ ବିଦ୍ୟାନୁଶୀଳନ ସହିତ ସ୍ୱକୀୟ ବିଚାର୍ଯ୍ୟ କର୍ମର ଭୂୟିଷ୍ଠ ସମ୍ବନ୍ଧ ପ୍ରାୟ ଘଟି ଉଠେ ନାହିଁ । ମାତ୍ର ସୌଭାଗ୍ୟ ହେତୁରୁ ଆମ୍ଭଭାଗ୍ୟରେ ଘଟିଅଛି । ଏହି କୁଟୀରରେ ରହି ଶୁଦ୍ଧା ଆମ୍ଭେ ଆରବୀ ଓ ସଂସ୍କୃତ ଅଧ୍ୟୟନଦ୍ୱାରା କେବଳ ବିଚାରାଳୟର କାର୍ଯ୍ୟ କରୁଅଛୁଁ । ଏତେବେଳେ ସାହସ କରି କହି ପାରୁଁ ମୁସଲମାନ ଓ ହିନ୍ଦୁ ଧର୍ମଶାସ୍ତ୍ରଜ୍ଞମାନେ ମିଥ୍ୟା ବ୍ୟବସ୍ଥା ଦେଇ ଆଉ ଆମ୍ଭଙ୍କୁ ଠକାଇ ପାରିବେ ନାହିଁ ।" ବାସ୍ତବ ଏହି ରୂପ ସାର୍ବକ୍ଷଣିକ ପରିଶ୍ରମରେ ବ୍ୟାପୃତ ଥିବାରୁ ଆନନ୍ଦରେ କାଳ ଯାପିତ ହୋଇଥିଲା ।

ଯେଉଁ ସକଳ ମକଦ୍ଦମା ଶାସ୍ତ୍ରର ବ୍ୟବସ୍ଥା ଅନୁସାରେ କରିବା ଆବଶ୍ୟକ; ସେ ସକଳ, ପଣ୍ଡିତ ଓ ମୌଲବୀମାନଙ୍କର ଅପେକ୍ଷା ନ ରଖି ଅନାୟାସରେ ନିଷ୍ପତ୍ତି କରା ଯାଇ ପାରେ ଏହି ଅଭିପ୍ରାୟରେ ସେହି ହିନ୍ଦୁ ଓ ମୁସଲମାନମାନଙ୍କର ଧର୍ମଶାସ୍ତ୍ରର ସାରସଂଗ୍ରହ କରିବାକୁ ଆରମ୍ଭ କଲେ । ଏହି ଗ୍ରନ୍ଥ ସେ ସମାପନ କରି ଯାଇ ନାହାନ୍ତି । ମାତ୍ର ପରିଶେଷରେ ଆଉ ୨ ଲୋକଦ୍ୱାରା ତାହାର ଯେ ସମାଧାନ ହୋଇଅଛି ତାହା ଏହି ମହାନୁଭବର ପରାମର୍ଶ ଓ ପ୍ରାଥମିକ ଉଦ୍ୟୋଗଦ୍ୱାରା ହୋଇଅଛି; ସନ୍ଦେହ ନାହିଁ ।

୧୭୮୯ ସାଲରେ ସେ ଶକୁନ୍ତଳା ନାମକ ସଂସ୍କୃତ ନାଟକ ଇଂରାଜୀ ଭାଷା ଅନୁବାଦ ପ୍ରକାଶ କଲେ । ଅନନ୍ତର ୧୭୯୪ ସାଲ ଆରମ୍ଭରେ ମନୁପ୍ରଣୀତ ଧର୍ମଶାସ୍ତ୍ରର ଅନୁବାଦ ପ୍ରକାଶିତ ହେଲା । ଯେ ସକଳ ଲୋକେ ଭାରତବର୍ଷର ପୂର୍ବକାଳୀୟ ଆଚାର ବ୍ୟବହାର ଜାଣିବାକୁ ଇଚ୍ଛା କରନ୍ତି ଏହି ଗ୍ରନ୍ଥ ସେମାନଙ୍କର ଅତ୍ୟନ୍ତ ଉପକାରୀ । ପରିଶେଷେ ଏହି ସୁବିଖ୍ୟାତ ପ୍ରଶଂସିତ ଲୋକ ବିଚାରାଳୟର କାର୍ଯ୍ୟ ନିଷ୍ପାଦନ ଓ ବିଦ୍ୟାନୁଶୀଳନରେ ଅସଙ୍ଗତ ପରିଶ୍ରମ କରିବାରୁ, ଅକାଳ କାଳଗ୍ରାସରେ ପତିତ ହେଲେ । ୧୭୯୪ ସାଲ ଏପ୍ରିଲ ମାସରେ, କଲିକତାରେ ତାହାଙ୍କର ଯକୃତ୍ ସ୍ଫୀତ ହେଲା । ଏବଂ ସେହି ମାସ ୨୭ ତାରିଖରେ ଅଷ୍ଟଚତ୍ୱାରିଂଶତ୍ତମ ବର୍ଷ ବୟଃକ୍ରମ ସମୟରେ କଳେବର ପରିତ୍ୟାଗ କଲେ ।

ସର ଉଇଲିୟମ ଜୋନ୍ସର କେତେ ଗୋଟିଏ ଅତି ସାମାନ୍ୟ ନିୟମ ନିର୍ଦ୍ଧାରିତ ଥିଲା । ତଦ୍ୱିଷୟରେ ଦୃଢତର ମନୋଯୋଗୀ ଥିବାରୁ ସେ ଏହି ସମସ୍ତ ଗୁରୁତର କାର୍ଯ୍ୟ ନିର୍ବାହକରେ ସମର୍ଥ ହୋଇ ଥିଲେ । ତାହା ମଧ୍ୟରେ ଗୋଟିଏ ଏହି ଯେ ବିଦ୍ୟାନୁଶୀଳନର ସୁଯୋଗ ପାଇଲେ କେବେହେଁ ଉପେକ୍ଷା କରା ଯିବ

ନାହିଁ । ଅନ୍ୟ ଏକ ଏହି ଯେ, ଆଉ ୨ ଲୋକମାନେ ଯେ ବିଷୟରେ କୃତକାର୍ଯ୍ୟ ହୋଇଅଛନ୍ତି, ଆମ୍ଭେ ମଧ୍ୟ ସେ ବିଷୟରେ କୃତକାର୍ଯ୍ୟ ହୋଇ ପାରିବୁଁ; ଏବଂ ସେହି ନିମନ୍ତେ ବାସ୍ତବ ପ୍ରତିବନ୍ଧକ ଦେଖି, ଅଥବା ପ୍ରତିବନ୍ଧକର ସମ୍ଭାବନା କରି, ଅଭିପ୍ରେତ ବିଷୟରୁ ନିବୃତ୍ତ ହେବା ଯୁକ୍ତିସିଦ୍ଧ ନୁହଇ, ବରଞ୍ଚ ତାହାର ସିଦ୍ଧି ବିଷୟରେ ସ୍ଥିର ନିଶ୍ଚୟ ହେବାକୁ ହେବ ।

ତାହାଙ୍କର ଜୀବନ ବୃତ୍ତାନ୍ତ ଲେଖକ ଲର୍ଡ଼ ଷ୍ଟିନ ମୌଥ କହନ୍ତି ଯେ, ଏହା ମଧ୍ୟ ତାହାଙ୍କର ଏକ ନିର୍ଦ୍ଧାରିତ ନିୟମ ଥିଲା, ଯେଉଁ ସକଳ ବ୍ୟାପାର ଅତିକ୍ରମ କରିବାକୁ ପାରି ଯାଏ ତାହା ଦେଖି ବିବେଚନା ପୂର୍ବକ ହସ୍ତାର୍ପିତ ବ୍ୟାପାର ସମାଧାନ ବିଷୟରେ କୌଣସି କ୍ରମେ ଉଦ୍‌ବେଗବାନ୍ ହେବା ଉଚିତ ନୁହଇ । ଏହି ନିୟମ ସେ କେତେବେଳେ ସ୍ୱେଚ୍ଛା ପୂର୍ବକ ଲଙ୍ଘନ କରି ନାହାନ୍ତି । ମାତ୍ର ସେ ଯେ ପ୍ରଥମ୍ ୨ ଏକ ୨ କର୍ମ ନିମନ୍ତେ ସମୟ ନିରୂପଣ କରି ଏବଂ ଅତିସାବଧାନ ହୋଇ ସେହି ନିର୍ଦ୍ଧାରିତ ସମୟରେ ସେ୍ ସେହି ସକଳ କର୍ମ ସମାଧାନ କରନ୍ତି; ଆମ୍ଭମାନଙ୍କ ବିବେଚନାରେ ଏହି ମହା ଫଳଦାୟକ ନିୟମଦ୍ୱାରା ଅବ୍ୟାହତରେ ଓ ଅନାକୁଳିତ ଚିତ୍ତରେ ଏହି ସମସ୍ତ ବିଷୟରେ କୃତକାର୍ଯ୍ୟ ହୋଇଥିଲେ ।

ସର ଉଇଲିୟମ ମୃତ୍ୟୁରେ ସର୍ବ ସାଧାରଣରେ ଯେ ପ୍ରକାର ଅସାଧାରଣ ମନସ୍ତାପ ଓ କ୍ଷତି ବୋଧ ହୋଇଅଛି ଅତିଅଳ୍ପ ଲୋକ ବିଷୟରେ ସେପରି ଦେଖା ଯାଏ । ଭାଷାଜ୍ଞାନ ବିଷୟରେ ବୋଧ ହୁଅଇ ପ୍ରାୟ ତାହାଙ୍କ ପରି ସେ ସମୟରେ କେହି ଲୋକ ଥିଲା ନାହିଁ । ପୁରାବୃତ୍ତ, ଦର୍ଶନଶାସ୍ତ୍ର, ସ୍ମୃତି, ଧର୍ମସଂକ୍ରାନ୍ତ ଗ୍ରନ୍ଥ, ପଦାର୍ଥବିଦ୍ୟା ଓ ସର୍ବଜାତୀୟ ଆଇନ ବ୍ୟବହାର ବିଷୟରେ ତାହାଙ୍କର ଅସାଧାରଣ ଜ୍ଞାନ ଥିଲା । ଆଉ ଯଦି ସେ ଭିନ୍ନଦେଶୀୟ କାବ୍ୟର ଭାବ ନେଇ ସ୍ୱଭାଷାରେ ସଙ୍କଳନ ନିମନ୍ତେ ଏତେ ଅନୁରକ୍ତ ନ ହୋଇ ଥାଆନ୍ତେ ଏବଂ ବହୁ ବିସ୍ତୃତ କର୍ମ ନିର୍ବାହ କରି ଆପଣାର ଶକ୍ତ୍ୟନୁଯାୟିନୀ ରଚନା ବିଷୟରେ ଯତ୍ନବାନ୍ ହେବା ନିମନ୍ତେ ଉପଯୁକ୍ତ ରୂପ ଅବକାଶ ପାଇ ଥାଆନ୍ତେ, ତାହା ହେଲେ ତାହାଙ୍କର କବିତ୍ୱ ବିଷୟରେ ମଧ୍ୟ ଅସାଧାରଣ ଖ୍ୟାତି ଲାଭର ଭୂୟସୀ ସମ୍ଭାବନା ଥିଲା । ସେ ପରିବାର ଓ ପୋଷ୍ୟବର୍ଗର ପ୍ରତି ଯେ ପ୍ରକାର ବ୍ୟବହାର କରନ୍ତି ତାହା ଅତିପ୍ରଶଂସନୀୟ । ସେ ସ୍ୱଭାବରେ ବଦାନ୍ୟ ଓ ତେଜସ୍ୱୀ ଥିଲେ ।

ସର ଉଇଲିୟମ ଜୋନ୍‌ସର ନାମ ଚିରସ୍ମରଣୀୟ କରିବାର ନିମନ୍ତେ ଭାରତବର୍ଷରେ ଓ ଇଂଲଣ୍ଡରେ ନାନା ଉପାୟ ନିର୍ଦ୍ଧାରିତ ହୋଇଅଛି ।

ଇଷ୍ଟ ଇଣ୍ଡିୟା କୋମ୍ପାନିର ଅଧ୍ୟକ୍ଷମାନେ ସେଣ୍ଟ ପାଲର କାଥିଡ୍ରାଲରେ ତାହାଙ୍କର ଏକ କୀର୍ତ୍ତିସ୍ତମ୍ଭ ନିର୍ମ୍ମାଣ କରି ଦେଇ ଅଛନ୍ତି; ଏବଂ ବଙ୍ଗ ଦେଶକୁ ଏକ ପ୍ରସ୍ତରମୟୀ ପ୍ରତିମୂର୍ତ୍ତି ପ୍ରେରଣ କରିଅଛନ୍ତି । ମାତ୍ର ତାହାଙ୍କର ସହଧର୍ମିଣୀ ୧୭୯୯ ସାଲରେ ତଦୀୟଗ୍ରନ୍ଥ ସକଳ ସଂଗ୍ରହ କରି ଯେ ଛ ଖଣ୍ଡ ପୁସ୍ତକରେ ମୁଦ୍ରିତ ଓ ପ୍ରଚାରିତ କରିଅଛନ୍ତି କେବଳ ତାହା ତାହାଙ୍କ ପକ୍ଷରେ ସର୍ବଠାରୁ ସମଧିକ ପ୍ରଶଂସନୀୟ ଓ ଅବିନଶ୍ୱର କୀର୍ତ୍ତିସ୍ତମ୍ଭ । ତଦ୍ବ୍ୟତୀତ ସେହି ବିଧବା ନାରୀ ଆପଣା ବ୍ୟୟରେ ତାହାଙ୍କର ଏକ ପ୍ରସ୍ତରମୂର୍ତ୍ତି ନିର୍ମାଣ କରାଇ ଅକ୍ସଫୋର୍ଡ [ଡ] ବିଦ୍ୟାଳୟର ପାର୍ଶ୍ୱସ୍ଥ ମନ୍ଦିରେ ସ୍ଥାପିତ କରିଅଛନ୍ତି ।

—ସମାପ୍ତ—

